



# କେତେକ ଅଣକାଷ୍ଠ ବନଜାତ ଦ୍ରବ୍ୟର ସଫଳ ଉପଯୋଗ ତଥା ସ୍ଥାୟୀ ଉତ୍ପାଦନକ୍ଷମ ସୂତ୍ରାବଳୀ

ବିକାଶ ରଥ





ବସୁନ୍ଧରା



# ସଂକ୍ଷେପରେ...

ବିଭିନ୍ନ ପ୍ରକାର ଅଣକାଷ୍ଠ/ଲଘୁ ବନଜାତ ଦ୍ରବ୍ୟ ଲକ୍ଷ ଲକ୍ଷ ଗରିବ ଓ ଦୁର୍ବଳ ଶ୍ରେଣୀ ଲୋକଙ୍କର ଜୀବନ ଓ ଜୀବିକାର ଆଧାର ହୋଇ ରହିଆସିଛି । କିନ୍ତୁ ଅନେକ କାରଣରୁ ଏଭଳି ଆଧାରର ସ୍ଥିତି କ୍ରମେ ବିପନ୍ନ ହେଉଥିବାର ଲକ୍ଷ୍ୟ କରାଯାଉଛି ଯାହାକି ଏଇ ଗରିବମାନଙ୍କ ଜୀବନ ପ୍ରସଙ୍ଗରେ ଅତ୍ୟନ୍ତ ଚିନ୍ତାର ବିଷୟ । ଗୋଟିଏ ଦିଗରେ ଜଙ୍ଗଲ ଧ୍ୱଂସ ଯୋଗୁଁ ଏସବୁ ଜିନିଷର ଉତ୍ପାଦନ କମିଆସୁଛି, ତା' ସହିତ ପୁଣି ସେଗୁଡ଼ିକର ସଂଗ୍ରହରେ ଯଥେଚ୍ଛାଚାର ତଥା ତ୍ରୁଟିପୂର୍ଣ୍ଣ ଉପଯୋଗ ପଦ୍ଧତି ପରିସ୍ଥିତିକୁ ଅଧିକ ଜଟିଳ କରିଦେଉଛି ।

ଏଇ ପରିପ୍ରେକ୍ଷୀରେ ବସୁନ୍ଧରା ପକ୍ଷରୁ ଏକ ଉଦ୍ୟମ ସ୍ୱରୂପ 'କେତେକ ଅଣକାଷ୍ଠ ବନଜାତ ଦ୍ରବ୍ୟର ସଫଳ ଉପଯୋଗ ତଥା ସ୍ଥାୟୀ ଉତ୍ପାଦନକ୍ଷମ ସୂତ୍ରାବଳୀ' ପୁସ୍ତକ ସଂକଳିତ ହୋଇଛି ଯାହା ପାଠକମାନଙ୍କୁ (ବିଶେଷତଃ, ପ୍ରାଥମିକ ସଂଗ୍ରହକାରୀଙ୍କୁ) ଧାରଣା ଦେବ ସେଇସବୁ ସୂତ୍ର ବା ବିଧି ବ୍ୟବସ୍ଥା ସଂପର୍କରେ ଯାହାକୁ ପାଳନ କଲେ ଏଇ ସଙ୍କଟକୁ ଯଥା ସମ୍ଭବ ପ୍ରତିହତ କରିହେବ ।

# କେତେକ
# ଅଣକାଷ୍ଠ ବନଜାତ ଦ୍ରବ୍ୟର ସଫଳ ଉପଯୋଗ
## ତଥା
# ସ୍ଥାୟୀ ଉତ୍ପାଦନକ୍ଷମ ସୂତ୍ରାବଳୀ

*ସନ୍ଦର୍ଭ ତଥା ସଂପାଦନା :*
**ବିକାଶ ରଥ**

ପ୍ରକାଶନ



**ବସୁନ୍ଧରା**
ଇ/୧୪, ଗଜପତି ନଗର, ସୈନିକ ସ୍କୁଲ,
ଭୁବନେଶ୍ୱର - ୭୫୧ ୦୦୫

ସନ୍ଦର୍ଭ ତଥା ସଂପାଦନା : ବିକାଶ ରଥ

ପ୍ରକାଶକ ବସୁନ୍ଧରା
୧୪-ଇ, ଗଜପତି ନଗର
(ପ୍ରେସ୍ ଛକ ନିକଟ)
ପୋ.ଅ.-ସୈନିକ ସ୍କୁଲ
ଭୁବନେଶ୍ୱର - ୭୫୧ ୦୦୫ (ଓଡ଼ିଶା)
ଫୋନ (୦୬୭୪) ୩୦୦୧୯୦, ୩୦୦୨୩୫
ଫ୍ୟାକ୍ସ (୦୬୭୪) ୫୧୯୨୩୭, ୫୦୯୨୩୭
ଇ-ମେଲ: vasundharanr@satyam.net.in

ପ୍ରଥମ ପ୍ରକାଶ ଡିସେମ୍ବର, ୨୦୦୧

ଲିପି ସଂଯୋଜନା : ସୂର୍ଯ୍ୟମଣି ସାହୁ

ମୁଦ୍ରଣ ଜୟ ଭାରତ ୟୁନିଟ୍
ସି/୨୩,ବରମୁଣ୍ଡା,ଭୁବନେଶ୍ୱର (ଓଡ଼ିଶା)
ଫୋନ : (୦୬୭୪) ୫୫୭୯୪୦

ସହଯୋଗ ରାଶି ଟ. ୨୫/-

# ମୁଖବନ୍ଧ

'କେତେକ ଅଣକାଷ୍ଠ ବନଜାତ ଦ୍ରବ୍ୟର ସଫଳ ଉପଯୋଗ ତଥା ସ୍ଥାୟୀ ଉତ୍ପାଦନକ୍ଷମ ସୂତ୍ରାବଳୀ' ମୁଖ୍ୟତଃ ଏକ ସଂକଳନ କାରଣ ଅନ୍ୟମାନଙ୍କର ଅଭିଜ୍ଞତା ଓ ଆବିଷ୍କାରକୁ ନେଇ ଏହା ରଚିତ। ତେଣୁ ଏଥିରେ ଯଦି ଶ୍ରଦ୍ଧେୟ କିଛି ଥାଏ, ତେବେ ତା'ର ଶ୍ରେୟ ସେଇ ଅଭିଜ୍ଞ ମଣିଷମାନଙ୍କୁ ଯିବ ଯେଉଁମାନଙ୍କ ମଧ୍ୟରୁ ଅନେକଙ୍କର ନାମ ପର୍ଯ୍ୟନ୍ତ ହୁଏତ ଆଜି ଆମକୁ ଜଣାନାହିଁ। ଆମକୁ ଜଣାନାହିଁ ଯେ କିଏ ପ୍ରଥମେ ଟୋଲ ତେଲ ନିଷ୍କାସନ ପାଇଁ ଶିଆଳି 'ଟୁପା'ର ଉପଯୋଗ କରିବାକୁ ଚିନ୍ତା କରିଥିଲେ ଅଥବା କିଏ ପ୍ରଥମେ କହିଥିଲେ ଯେ ନାଗେଶ୍ୱର ଫୁଲର ଗୁଣ ମୁଖ୍ୟତଃ ତା'ର ପୁଂ-କେଶରରେ ଠୁଳ ହୋଇରହିଛି। ଆଜି ଏ ସଂକଳନର ପ୍ରକାଶ ଅବସରରେ ସେଇ ଅଜ୍ଞାତନାମା ଆବିଷ୍କାରକମାନଙ୍କୁ ଏବଂ ସେମାନଙ୍କ ଜ୍ଞାନକୌଶଳକୁ ପରମ୍ପରା କ୍ରମେ ସୁରକ୍ଷିତ ରଖିଆସିଥିବା ବ୍ୟକ୍ତି/ଜାତିମାନଙ୍କୁ ଆମେ ଆମର ଶ୍ରଦ୍ଧା ନିବେଦନ କରୁଛୁ।

ବିଜ୍ଞାନର ଅଗ୍ରଗତି ସଂଗରେ ମଣିଷ ମଧ ଆଗେଇଛି ସତ, କିନ୍ତୁ ଏ ଅଗ୍ରଗତି ଏପରି କେତେକ ସମସ୍ୟା ମଧ ସୃଷ୍ଟି କରିଛି ଯାହାର ସମାଧାନ ଆଧୁନିକ ବିଜ୍ଞାନ ଦେଇପାରୁନାହିଁ। ଧୀରେ ଧୀରେ ଅନେକେ ବିଶ୍ୱାସ କଲେଣି ଯେ ସେସବୁର ସମାଧାନ ପାଇଁ ଆମକୁ ପୁରୁଣା ଜ୍ଞାନକୌଶଳ ଓ ପରମ୍ପରାର ପୁନରୁଦ୍ଧାର କରିବାକୁ ପଡିବ, କିନ୍ତୁ ଏହା ଏତେ ସହଜ କଥା ନୁହେଁ କାରଣ ପାରମ୍ପରିକ ଜ୍ଞାନକୌଶଳ ଅନେକାଂଶରେ ଲିପିବଦ୍ଧ ଅବସ୍ଥାରେ ନାହିଁ। ସୁଖର କଥା ଯେ ସ୍ଥିତି ସଂପୂର୍ଣ୍ଣ ନିରାଶାଜନକ ନୁହେଁ କାରଣ ଅନେକ ଅଞ୍ଚଳରେ ଲୋକେ ଏବେ ମଧ କେତେକ ଜ୍ଞାନକୌଶଳକୁ ବଞ୍ଚାଇ ରଖିଛନ୍ତି।

ଏଇ ଛୋଟ ବହିରେ ଆମେ ବୃକ୍ଷଜାତ ଦ୍ରବ୍ୟ ସଂପର୍କିତ ସେଇଭଳି କେତେକ ପାରମ୍ପରିକ ଜ୍ଞାନକୌଶଳକୁ ଲୋକଲୋଚନକୁ ଆଣିବାର ଚେଷ୍ଟା କରିଛୁ। ତେବେ, ଏକ ପରମ୍ପରାବାଦୀ ମତ ପୋଷଣ କରିବା ଆମର ଲକ୍ଷ୍ୟ ନୁହେଁ, ପରମ୍ପରାରେ ଥିବା ତଥ୍ୟଗୁଡିକର ବୈଜ୍ଞାନିକ ବିଶେଷତ୍ୱକୁ ପରଖି ଜନସାଧାରଣଙ୍କ ବୃହତ୍ତର ହିତସାଧନାର୍ଥେ ପ୍ରକାଶ କରିବା ଲାଗି ହିଁ ଏହି ପ୍ରଚେଷ୍ଟାଟି ଉଦ୍ଦିଷ୍ଟ।

ମୁଖ୍ୟ ଅଧ୍ୟାୟ ଗୁଡିକର ମୁଦ୍ରଣ ପ୍ରସ୍ତୁତି ଶେଷ ହେବା ପରେ ଜଣାପଡିଥିଲା ଯେ ଆଉ କେତେକ ବିଷୟ ସ୍ପଷ୍ଟ କରାଯାଇଥିଲେ ଭଲ ହୋଇଥା'ନ୍ତା। ସେଥିପାଇଁ, 'ସ୍ପଷ୍ଟୀକରଣ' ଶୀର୍ଷକ ସ୍ୱତନ୍ତ୍ର ପୃଷ୍ଠାଟିଏ ଶେଷ ଭାଗରେ ସଂଲଗ୍ନ କରାଯାଇଛି ଏବଂ ପାତାଳଗରୁଡ ବିଷୟକ କେତେକ ଅଧିକ ଫଟୋ ମଧ ଦିଆଯାଇଛି।

ସମସ୍ତ ଚେଷ୍ଟା ସତ୍ତ୍ୱେ ବି ଏଥିରେ କେତେକ ତ୍ରୁଟିବିଚ୍ୟୁତି ରହିଯାଇଥିବା ଅସମ୍ଭବ ନୁହେଁ। ସେଗୁଡ଼ିକ ଦୃଷ୍ଟିକୁ ଆସିଲେ ପରବର୍ତ୍ତୀ ସଂସ୍କରଣରେ ତା'ର ସଂଶୋଧନ ପାଇଁ ଚେଷ୍ଟା କରାଯିବ। ଏତଦ୍‌ବ୍ୟତୀତ, ପାଠକମାନଙ୍କର ସୁଚିନ୍ତିତ ମତାମତ ତଥା ପରାମର୍ଶକୁ ମଧ୍ୟ ଆମେ ସ୍ୱାଗତ କରୁଛୁ।

ସ୍ଥଳ ବିଶେଷରେ କେତେକ ଗ୍ରାମ ଅଥବା ଜଙ୍ଗଲ ସୁରକ୍ଷା ସମିତିର ନାମ ବିଭିନ୍ନ ପ୍ରସଙ୍ଗରେ ଉଲ୍ଲେଖ କରାଯାଇଛି, କିନ୍ତୁ ସେଗୁଡ଼ିକୁ ଆକ୍ଷେପ ରୂପେ ବିଚାର ନକରି କେବଳ ମାତ୍ର ବିଷୟବସ୍ତୁକୁ ପ୍ରାଞ୍ଜଳ କରୁଥିବା ଉଦାହରଣ ରୂପେ ଦେଖିବା ପାଇଁ ଅନୁରୋଧ।

ନିର୍ଦ୍ଦେଶକ

*ବସୁନ୍ଧରା*

# କୃତଜ୍ଞତା

## ବ୍ୟକ୍ତିବିଶେଷ

- ଶ୍ରୀ ବିଶ୍ୱନାଥ ହୋତା, ଭବାନୀପାଟଣା
- ଶ୍ରୀ ସନାତନ ଜେନା, ଆସ୍କା
- ଅଧ୍ୟାପକ ଶ୍ରୀ ଆର.କେ. ନାୟକ
- ଶ୍ରୀ ସତ୍ୟବ୍ରତ ସାହୁ, ରାଜ୍ୟ ଉଦ୍ଭିଦ ଉଦ୍ୟାନ, ନନ୍ଦନକାନନ
- ଶ୍ରୀ ପଞ୍ଚାନନ ଦାଶ, ଲପଙ୍ଗା
- ଶ୍ରୀ ଜଟିଆ କୁଜୁର, ତୁନ୍‌ମୁରା
- ଶ୍ରୀ ଉଡ଼ିଆ କିଶାନ, ଗୋମାରଡ଼ିହି
- ବୈଦ୍ୟ ଶ୍ରୀ ବାନାମ୍ବର ଦାସ, ବରପାଲି
- ଶ୍ରୀ ମହେନ୍ଦ୍ର ବେହେରା, ଧାନୀ-ପାଞ୍ଚମୌଜା
- ଶ୍ରୀମତୀ ଆରତ ନାୟକ ଓ ଶ୍ରୀମତୀ ଅହଲ୍ୟା ନାୟକ, ବରପାଲି
- କବିରାଜ ଶ୍ରୀ ମାଗୁଣି ମିଶ୍ର, ରଣପୁର
- କବିରାଜ ଶ୍ରୀ ବନମାଳୀ ଦାସ, କଟକ
- ଶ୍ରୀମତୀ ଆଶା ମାଝି, ସାନପଥୁରିଆ
- ସର୍ବଶ୍ରୀ ଜଗବନ୍ଧୁ ବିଶ୍ୱାଳ ଓ ଉମେଶ ସ୍ୱାଇଁ, ତାରିଆ
- ଶ୍ରୀ ଛତିଶ କୁମାର ତୁଙ୍ଗ୍, ବିଳାସ
- ଶ୍ରୀ ଗୋପାଳ ମହାପାତ୍ର, ଗୋବର୍ଦ୍ଧନ ଶଳ
- ସର୍ବଶ୍ରୀ ଲେଧ୍ରା କିସ୍‌କୋ ଓ ସମାୟ ହେମ୍ବ୍ରମ, ଲକ୍ଷ୍ମୀନଗର ଛକ
- ଶ୍ରୀ ନରେନ୍ଦ୍ର ବେହେରା, ଚିତ୍ରଡ଼ା
- ଶ୍ରୀ ରାଜେନ୍ଦ୍ର ପ୍ରସାଦ ଧୀର, କୋଷ୍ଠା
- ସର୍ବଶ୍ରୀ କର୍ମୁ ଦେଓ, ବିଜୟ ଦେଓ ଓ ସନ୍ତୋଷ କୁମାର ସିଂ, ପାକୁଟିଆ
- ଶ୍ରୀ ଦାବୁଲାଲ, ଠାକୁରମୁଣ୍ଡା
- ଶ୍ରୀ ପଦ୍ମଲୋଚନ ନନ୍ଦ, ଠାକୁରମୁଣ୍ଡା
- ସର୍ବଶ୍ରୀ ଚନ୍ଦ୍ରମଣି ଦାସ ଓ ଦୀନବନ୍ଧୁ ଦାସ, ବିଶିପୁର
- ଶ୍ରୀ ମହେନ୍ଦ୍ର ଦାସ, ବିଶିପୁର

- ବୈଦ୍ୟ ଶ୍ରୀ ଗଜେନ୍ଦ୍ର ନାରାୟଣ ମହାନ୍ତ, କରଞ୍ଜିଆ
- ଶ୍ରୀ ସୁକୁମାର ଭୋଳ, ଡାଟୋ
- ଶ୍ରୀ ଆର୍.ସି. ଦାସ, ବାରିପଦା
- ଶ୍ରୀ ଅମୂଲ୍ୟ କୁମାର ସାହୁ, ଡାଡ଼କି
- ଶ୍ରୀ ଗୋରାଚାନ୍ଦ ମହାତୋ, ବୁଢ଼ୀଖମାରୀ
- ଶ୍ରୀମତୀ ରତନୀ ମହାତୋ, ବୁଢ଼ୀଖମାରୀ
- ଶ୍ରୀ ନବ କିଶୋର ଦଳାଇ, ଶଙ୍ଖଭଙ୍ଗା
- ସର୍ବଶ୍ରୀ ସାବନ ଯୋଜୋ, ପାବାଲ ଆଇନ, ପରବଦନ ବାଗେ ଏବଂ ଏତଓ୍ୱା ଲମ୍‌ଗା, ବରସୁଆଁ, ଗୋଗେଇଟୋଲି
- ଶ୍ରୀ ମାସିଦାସ ଯୋଜୋ, ଲଡ଼ୋସରା
- ସର୍ବଶ୍ରୀ ଲୁଇସ ଗୁରିଆ ଓ ବୁଦ୍ଧିଚନ୍ଦ୍ର ଗୁରିଆ, ଝାରବେଡ଼ା
- ଶ୍ରୀ ଭୋଳାନାଥ ମହାତୋ, କାଳିଆପୋଷ
- ଶ୍ରୀ ମାତିଆସ ମୁଣ୍ଡା, ବିଶ୍ରା
- ଶ୍ରୀମତୀ ସଗେନ ମାଣକି, ଚିରୁବେଡ଼ା, ଖାରୁଆକୋଚା
- ସୁଶ୍ରୀ ନୀଲି କେର୍‌କେଟା ଓ ସୁଶ୍ରୀ ମୁକୁଟ କୁମାରୀ ତିର୍କୀ, ନୂଆଗାଁ
- ଶ୍ରୀ ମାରିଆନୁସ ଡୁଙ୍ଗଡୁଙ୍ଗ, ଶ୍ରୀ ନରେନ୍ଦ୍ର ବାଗ ଓ ସୁଶ୍ରୀ ସୁଶୀଳା କୁଲୁ, କୁତ୍ରା
- ସର୍ବଶ୍ରୀ ଯୋଶେଫ ସୋରେନ ଓ ବାସିଲ, କୁତ୍ରା
- ଶ୍ରୀ ଇଗନାସ୍ୟୁସ୍ କ୍ୟୁରୋ, କୁତ୍ରା
- ସର୍ବଶ୍ରୀ ରେଣୁ ଦେହୁରୀ, ଚନ୍ଦ୍ରମଣୀ ଦେହୁରୀ ଓ ରମେଶ ଚନ୍ଦ୍ର ପାତ୍ର, ବୁଢ଼ାଭୂଇଁ
- ଶ୍ରୀ ସିଲାସ ବାବା, ବୁଢ଼ାଭୂଇଁ
- ଶ୍ରୀ ଅଜୟ ମହାନ୍ତ, ଲହୁଣିପଡ଼ା
- ଶ୍ରୀ ରବି ଶଙ୍ଖାରୀ, ବଇଣ୍ଡା
- ଶ୍ରୀମତୀ ରୁକୁଣା ବେହେରା, ନାଖରା (ଶଙ୍ଖାରୀ ସାହି)
- ଶ୍ରୀ ଅଶ୍ୱିନୀ ମହାନ୍ତ, ଗୁରୁଣ୍ଡିଆ
- ସର୍ବଶ୍ରୀ ପି.ସି. ସାହୁ ଓ ଡ଼ି.ଆର. ସାହୁ, ଜେରେଙ୍ଗ ଦେହୁରୀ ସାହି
- ଶ୍ରୀ ନୀଳମଣି ଶଙ୍ଖାରୀ, ଦିଓନାଲୀ
- ଶ୍ରୀମତୀ ଜୟନ୍ତୀ ପ୍ରଧାନ ଏବଂ ଶ୍ରୀମତୀ ସତ୍ୟଭାମା ଦେଇ, ଆଖୁପଦର
- ବୈଦ୍ୟ ଶ୍ରୀ ଅର୍ଜୁନ ପ୍ରଧାନ, ଆଖୁପଦର
- ଶ୍ରୀ ପ୍ରଦୀପ କୁମାର ସ୍ୱାଇଁ, ଆଖୁପଦର

- ଡ଼. ଏ.କେ. ଜୟସ୍ୱାଲ, ଭାରତୀୟ ଲାଖ ଗବେଷଣା ପ୍ରତିଷ୍ଠାନ, ରାଞ୍ଚି (ଝାଡ଼ଖଣ୍ଡ)
- ଶ୍ରୀ ଡି.କେ. ସିଂହ, ଭାରତୀୟ ଲାଖ ଗବେଷଣା ପ୍ରତିଷ୍ଠାନ, ରାଞ୍ଚି (ଝାଡ଼ଖଣ୍ଡ)
- ଡ଼. ମଞ୍ଜୁ ଆହଲ, ପାଲମପୁର (ହିମାଚଳ ପ୍ରଦେଶ)
- ଶ୍ରୀମତୀ ପ୍ରେମଲତା ପାଲିଓ୍ୱାଲ, ଉଦୟପୁର (ରାଜସ୍ଥାନ)
- ଶ୍ରୀ ଶାନ୍ତିଲାଲ ହେଦା, ସେବା ମନ୍ଦିର, ଉଦୟପୁର (ରାଜସ୍ଥାନ)
- ଶ୍ରୀ ଦୀପିକା ପ୍ରସାଦ, ସାଟେନାପଲ୍ଲୀ (ଆନ୍ଧ୍ର ପ୍ରଦେଶ)

### ଅନୁଷ୍ଠାନ / ସଂସ୍ଥା

- ପ୍ରଧାନ ମୁଖ୍ୟ ବନ ସଂରକ୍ଷଣଙ୍କ କାର୍ଯ୍ୟାଳୟ ଓ ପାଠାଗାର, ଭୁବନେଶ୍ୱର
- ବନ ବିଭାଗ, ରାଜସ୍ଥାନ
- ଭାରତୀୟ ଲାଖ ଗବେଷଣା ପ୍ରତିଷ୍ଠାନ, ନାମ୍‌କୁମ୍, ରାଞ୍ଚି
- ନାରାୟଣ ବନୌଷଧି ଭଣ୍ଡାର, କଟକ
- ଗୃହସ୍ଥି ଉଦ୍ୟୋଗ, ରାଉରକେଲା
- ଔଷଧୀୟ ଉଦ୍ୟାନ, ପାତ୍ରପଡ଼ା, ଭୁବନେଶ୍ୱର
- ରାଜ୍ୟ ଗ୍ରନ୍ଥାଗାର, ଭୁବନେଶ୍ୱର
- ଦିଶା, ବିଶ୍ରା
- ଇନ୍ଦିରା ସ୍ମୃତି ଯୁବ ପରିଷଦ, ଯଶିପୁର
- ଜଙ୍ଗଲ ସୁରକ୍ଷା ସମିତି, ଲପଙ୍ଗା
- ଜଙ୍ଗଲ ସୁରକ୍ଷା ସମିତି, ଗଡ଼ବାଣିକିଲୋ
- ୟୁଥ୍, କୁତ୍ରା
- ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ, ପୁରୀ
- ଜଙ୍ଗଲ ସୁରକ୍ଷା ସମିତି, ଧାନୀ- ପାଞ୍ଚମୌଜା

### ଗ୍ରାମବାସୀ

- ଆନନ୍ଦାପଲ୍ଲୀ, ନୋଡର (ନୟାଗଡ଼)
- ଲପଙ୍ଗା (ସମ୍ବଲପୁର)
- ଖାଡ଼ିଆ ବସ୍ତି, କାଠପାଳ
- ସୁରୁକାବାଡ଼ି
- ଗଡ଼ବାଣିକିଲୋ
- ନାଖରା ସାହି (ବଇଣ୍ଡା)

# ସୂଚୀପତ୍ର



* * *

# ବିଶେଷ ଦ୍ରଷ୍ଟବ୍ୟ

ବହିଟିରେ ଦିଆଯାଇଥିବା ସମସ୍ତ ସଂଗ୍ରହ ଦର ଅଥବା ବଜାର ଦର ପ୍ରାୟତଃ ୨୦୦୧ ମସିହାରେ ସଂଗୃହୀତ ତଥ୍ୟ ଉପରେ ଆଧାରିତ । ସେଗୁଡ଼ିକୁ କେବଳ ସମ୍ଭାବ୍ୟ ଦରଦାମ୍ ସଂପର୍କରେ ମାତ୍ର ଆଭାସ ରୂପେ ବ୍ୟବହାର କରାଯିବା ଉଚିତ, ସ୍ଥାୟୀ ଅଥବା ଯଥାର୍ଥ ମୂଲ୍ୟ ରୂପେ ନୁହେଁ ।

ଏବଂ

କେତେକ ଉପଯୋଗୀ ବୃକ୍ଷଲତାର ବଂଶବିସ୍ତାର ପ୍ରଣାଳୀ ଏଥିରେ ଦିଆଯାଇଥିଲେ ମଧ୍ୟ ସେଥିରେ ଲାଗୁଥିବା ରୋଗପୋକ ଏବଂ ସେଗୁଡ଼ିକର ପ୍ରତିକାର ଭଳି କେତେକ ଅତିରିକ୍ତ ବିଷୟ ନାନା କାରଣରୁ ସ୍ଥାନ ପାଇପାରିନାହିଁ । ଏସବୁ ପ୍ରସଙ୍ଗରେ ଚାଷୀମାନେ ବିଶେଷଜ୍ଞଙ୍କ ପରାମର୍ଶ ନେବା ଉଚିତ ହେବ ।

# ଉପକ୍ରମଣିକା

ଅଳ୍ପ କାଳ ତଳେ ଗୋଟିଏ କୌତୂହଳପ୍ରଦ ସମ୍ବାଦ ପ୍ରକାଶ ପାଇଥିଲା ଯେଉଁଥିରେ କୁହାଯାଇଥିଲା ଯେ ଲଙ୍କାର ତୀବ୍ରତା ('ରାଗ') କେତେ ହେବ, ତା' ନିର୍ଭର କରେ ତାକୁ ତୋଳିବାର ସମୟ ଉପରେ । ଅର୍ଥାତ, ସକାଳେ ତୋଳିଲେ ଯେତିକି ରାଗ ଲାଗିବ, ସଂଧ୍ୟାରେ ତୋଳିଲେ ହୁଏତ ସେଥିରେ ପାର୍ଥକ୍ୟ ଆସିପାରେ ।

ଶତାବ୍ଦୀ ଶତାବ୍ଦୀର ଅଭିଜ୍ଞତା ଫଳରେ ବିଭିନ୍ନ ଅଞ୍ଚଳରେ ଲୋକେ ଅନେକ ଏପରି ସୂତ୍ର ଆବିଷ୍କାର କରିଥିଲେ ଯାହା ପ୍ରକୃତି ସହିତ ସେମାନଙ୍କର ସମ୍ବନ୍ଧକୁ ଅଧିକ ସୁଗମ ତଥା ଫଳପ୍ରଦ କରିବା ସାହାଯ୍ୟ କରିଥିଲା । ପ୍ରାକୃତିକ ସଂପଦର କ୍ରମାଗତ ଅବକ୍ଷୟର ପୃଷ୍ଠଭୂମିରେ ସେଭଳି କେତେକ ସୂତ୍ର ଆଜି ଗୁରୁତ୍ୱପୂର୍ଣ୍ଣ ହୋଇପଡ଼ିଛି ଯାହା ସେଇ ସଂପଦଗୁଡ଼ିକର ସଫଳ ଉପଯୋଗ ତଥା ସମୁଚିତ ସଂରକ୍ଷଣ ଭଳି ପରସ୍ପର ବିରୋଧୀ ଅଭ୍ୟାସ/ବ୍ୟବସ୍ଥା ଦୁଇଟି ମଧ୍ୟରେ ଏକ ସେତୁ ପ୍ରତିଷ୍ଠା କରିପାରିବ ଏବଂ ଆହରଣ (ସଂଗ୍ରହ/ଉପଯୋଗ) ଯେ ସଂରକ୍ଷଣର ଶତ୍ରୁ ନୁହେଁ, ତା'ର ଉପାୟ କରି ଦେଇପାରିବ ।

ବନଜାତ ଦ୍ରବ୍ୟଗୁଡ଼ିକର ଉତ୍ପାଦନ/ଆହରଣ ଯେପରି ସ୍ଥାୟୀ ଭାବରେ ହୋଇପାରିବ ଅର୍ଥାତ ଉତ୍ପାଦନ ଯେପରି ଅବ୍ୟାହତ ରହିବ, ସେଥିପାଇଁ ତିନିଗୋଟି ବିଷୟ ପ୍ରତି ଦୃଷ୍ଟି ଦେବାର ଆବଶ୍ୟକତା ରହିଛି । ସେଗୁଡ଼ିକ ହେଉଛି :

- ସଂଗ୍ରହ କରିବାର ସଠିକ୍ ସୂତ୍ର ବା ନିୟମ ଯାହା ପାଳନ କଲେ ଗଛର କ୍ଷତି ଘଟିବ ନାହିଁ ।
- ସମୁଚିତ ଉପଯୋଗର ସୂତ୍ର ଯାହା ବନଜାତ ଦ୍ରବ୍ୟଗୁଡ଼ିକର ଅଯଥା ଅପଚୟକୁ ବନ୍ଦ କରିବା ସହିତ ସଂଗ୍ରହକାରୀକୁ ତା' ପରିଶ୍ରମର ସର୍ବାଧିକ ସମ୍ଭବ ଲାଭ ଦେଇପାରିବ । ଉଦାହରଣ ସ୍ୱରୂପ, ଠିକ୍ ଭାବରେ ଶୁଖାଇ ବା ବ୍ୟବହାର କରି ନଜାଣିଲେ ଶିଆଳି ପତ୍ରରୁ ଯଦି ଅନେକ ନଷ୍ଟ ହୋଇଯାଏ, ତା'ହେଲେ ସଂଗ୍ରହକାରୀ ହୁଏତ ଗଛରେ ରହିଥିବା ଅବଶିଷ୍ଟ ଅଥଚ ଛୋଟ ପତ୍ର ବି ତୋଳି ଆଣିପାରେ ସେଇ କ୍ଷତିକୁ ଭରଣା କରିବା ପାଇଁ ଯାହା ଫଳରେ କି ଶେଷ ପର୍ଯ୍ୟନ୍ତ ଗଛ ଉପରେ ହିଁ ଚାପ ପଡ଼ିବ । ସେଇଭଳି, ଗୋଟିଏ ଗଛରୁ ପ୍ରଥମ ପର୍ଯ୍ୟାୟରେ ଅଣାଯାଇଥିବା ଛାଲି ଯଦି ନଷ୍ଟ ହୋଇଯାଏ, ତା'ହେଲେ ସଂଗ୍ରହକାରୀ ଅବଶିଷ୍ଟ ଛାଲିକୁ ବି ଗଛରୁ ବାହାର କରିନେଇପାରେ ଏବଂ ସେଭଳି କ୍ଷେତ୍ରରେ ଗଛଟି ମରିଯିବା ପ୍ରାୟ ନିଶ୍ଚିତ ହୋଇଯାଏ ।

● ବଂଶବିସ୍ତାରର ସୂତ୍ର : ଅନେକ ଉପଯୋଗୀ ବୃକ୍ଷଲତାର ବ୍ୟାପକ ବଂଶବିସ୍ତାରର ପ୍ରୟୋଜନ ରହିଛି କାରଣ ସେଗୁଡ଼ିକର ସଂଖ୍ୟା ଉଦ୍‌ବେଗଜନକ ଭାବରେ ହ୍ରାସ ପାଉଛି । କିନ୍ତୁ ସଠିକ୍ ପଦ୍ଧତି ନଜାଣିଲେ ବଂଶବିସ୍ତାରର ଯୋଜନା ନିଷ୍ଫଳ ହୋଇଯାଇପାରେ ।

ଅନେକ ବନଜାତ ଦ୍ରବ୍ୟର ସଂଗ୍ରହ ପଦ୍ଧତି ଏପରି ଯେ ସେଗୁଡ଼ିକ ଗଛର ପ୍ରାୟ କୌଣସି କ୍ଷତିକରେ ନାହିଁ । ଉଦାହରଣ ସ୍ୱରୂପ, କାଟି ଦିଆଯାଇଥିବା ଶାଳଗଛଗୁଡ଼ିକ ଗଜା ହେବା ସମୟରେ ଶାଳପତ୍ର ସଂଗ୍ରହକାରୀମାନେ ସହଜରେ ଭଲପତ୍ର ପାଇଥା'ନ୍ତି ; କିନ୍ତୁ ଯେହେତୁ ପାକଳ ଓ ବଡ଼ପତ୍ର ନହେଲେ ସେମାନଙ୍କର କାମରେ ଲାଗିବ ନାହଁ, ତେଣୁ ସେମାନେ କଅଁଳ ଓ ଅବିକଶିତ ପତ୍ର ତୋଳନ୍ତି ନାହିଁ । ତେଣୁ ଗଛର ବଢ଼ିବା ପାଇଁ ମଧ୍ୟ ବିଶେଷ କୌଣସି ସମସ୍ୟା ସେମାନେ ସୃଷ୍ଟି କରିନଥା'ନ୍ତି ।

କିନ୍ତୁ ସମସ୍ୟା ସୃଷ୍ଟି ହୁଏ ଯେତେବେଳେ କି ଗଜାରୁ ଭଲ ପତ୍ର ସହଜରେ ପାଇବା ଉଦ୍ଦେଶ୍ୟରେ ବଡ଼ ବଡ଼ ଶାଳଗଛ କାଟି ଦିଆଯାଏ । ଉଚ୍ଚତା ହେଉଛି ଶାଳଗଛର ଲକ୍ଷ୍ୟ, ବ୍ୟାପ୍ତି (ଝଙ୍କାଳିଆ ହେବା) ନୁହେଁ; ତେଣୁ କାଟି ଦେଇ ତାକୁ ଶାଳବୁଦାରେ ସୀମିତ କରି ରଖିଦେବା ଏକ ଅପରାଧ । ଏପରି କରାଗଲେ ଶାଳକାଠ, ଶାଳମଞ୍ଜି ଓ ଝୁଣାର ଉତ୍ପାଦନ ସମ୍ଭାବନା ତ ଅବରୁଦ୍ଧ ହୋଇଯାଏ, ବଡ଼ଗଛର ଜଙ୍ଗଲ ପରିବେଶର ଯେଉଁ ଉପକାର କରିପାରିଥା'ନ୍ତା, ତା' ମଧ୍ୟ ମିଳେ ନାହିଁ ।

ତେଣୁ ପ୍ରାଥମିକ ସଂଗ୍ରହକାରୀମାନେ ଜାଣିବା ଉଚିତ ଯେ କ'ଣ କଲେ ସେମାନଙ୍କର ଉଭୟ ତାତ୍କାଳିକ ଏବଂ ଦୀର୍ଘକାଳୀନ ସ୍ୱାର୍ଥରକ୍ଷା ସମ୍ଭବ ହେବ । ଅର୍ଥାତ୍ ମଣିଷ ଓ ପ୍ରକୃତି ଉଭୟେ ବଞ୍ଚିବେ- ଏଭଳି ବ୍ୟବସ୍ଥା କରିବା ଅପରିହାର୍ଯ୍ୟ ହୋଇପଡ଼ିଛି । ପରବର୍ତ୍ତୀ ଅଧ୍ୟାୟଗୁଡ଼ିକରେ ସେଇ ବ୍ୟବସ୍ଥାଗୁଡ଼ିକର କେତେକ ଆଭାସ ଦିଆଯାଇଛି ।

***

1



କାଟେସାହି
(କେନ୍ଦୁଝର ଜିଲ୍ଲା)
ଗାଁରେ ନଳକୂଅ
ପାଖରେ
ଆଦିବାସୀମାନେ
ଲଗାଇଥିବା ବଡ଼ ଗଛ



ଛୋଟ ଅବସ୍ଥାରେ ନାଗେଶ୍ୱର ଗଛ
(ଔଷଧାୟ ଉଦ୍ୟାନ, ପାତ୍ରପଡ଼ା,
ଭୁବନେଶ୍ୱର)



ନାଗେଶ୍ୱର ଫୁଲର ପୁଂ-କେଶର



ପୁଂ-କେଶର (ବିବର୍ଦ୍ଧିତ ରୂପ)

ଆମ୍ବ ଗଛରେ ମିଲାଙ୍ଗ ଜାତୀୟ
ରାସ୍ନା (କରଡ଼ାପାଳ,କେନ୍ଦୁଝର)
ବୃଦ୍ୟଶକ୍ତି ସଂକେତକର ଏକ
ଦୃଷ୍ଟାନ୍ତ । ଆମ୍ବ ଗଛର ରାସ୍ନା
ହାଡ଼ଭଙ୍ଗାର ଚିକିତ୍ସା ପାଇଁ
ଫଳପ୍ରଦ ହୁଏ ବୋଲି କେହି
କେହି ବିଶ୍ୱାସ କରନ୍ତି ।





ପାତାଳଗରୁଡ଼ (ବନ ବିଭାଗୀୟ ଚାରା
କେନ୍ଦ୍ର, ଶଙ୍ଖାଭଙ୍ଗା, ମୟୂରଭଞ୍ଜ)



ଅଶ୍ୱଗନ୍ଧା (ଔଷଧୀୟ ଉଦ୍ୟାନ, ପାତ୍ରପଡ଼ା,
ଭୁବନେଶ୍ୱର)

# ବନୌଷଧି

ଓଡ଼ିଆରେ 'ବିଧିନିଷେଧ' ବୋଲି ଗୋଟିଏ ଶବ୍ଦର ପ୍ରଚଳନ ରହିଛି ଯାହାକି ଇଂରାଜୀ 'Thumb Rule'ର ପର୍ଯ୍ୟାୟବାଚୀ ମନେହୁଏ । ଗୋଟିଏ ଶବ୍ଦ ହୋଇଥିଲେ ବି 'ବିଧିନିଷେଧ' ପ୍ରକୃତରେ ଦୁଇଟି ଶବ୍ଦର ସନ୍ଧି, ଯଥା :

ବିଧି : ଯେଉଁ ଉପାୟ ବା ପଦ୍ଧତି ଅନୁସରଣ କଲେ କୌଣସି କାର୍ଯ୍ୟ ସର୍ବାଧିକ ସଫଳ ହୋଇପାରିବ ।

ନିଷେଧ : ଯାହାକୁ ଅନୁସରଣ କଲେ ବିଫଳତା ବା କ୍ଷୟକ୍ଷତିର ସମ୍ଭାବନା ଏଡ଼ାଇ ହେବ ।

ଇଂରାଜୀରେ 'Thumb Rule' କହିଲେ ଯାହା ବୁଝାଯାଏ, ସେଥିରେ ଉପରୋକ୍ତ ଦୁଇ ସୂତ୍ର ବା ବ୍ୟବସ୍ଥାର ଭାବନା ନିହିତ ହୋଇ ରହିଛି ।

ବିଭିନ୍ନ ବନଜାତ ଦ୍ରବ୍ୟର ସଫଳ ଉପଯୋଗ ତଥା ସ୍ଥାୟୀ ଉତ୍ପାଦନକ୍ଷମ ସୂତ୍ରାବଳୀ ବା ପଦ୍ଧତିମାନ ସାଧାରଣତଃ ମୌଖିକ ଭାବରେ ରହିଛି, ଅର୍ଥାତ୍ ଏଗୁଡିକ କ୍ୱଚିତ ଲିପିବଦ୍ଧ କରାଯାଇଛି । ଆଧୁନିକ ବା ବୈଜ୍ଞାନିକ ବିଧିନିଷେଧଗୁଡ଼ିକର ଲିଖିତ ରୂପ ଥିଲେ ମଧ ପାରମ୍ପରିକ ବିଧିନିଷେଧଗୁଡ଼ିକର ଜ୍ଞାନ ପ୍ରାୟତଃ ମୌଖିକ ଭାବରେ ହିଁ ପୀଢ଼ିରୁ ପୀଢ଼ିକୁ ହସ୍ତାନ୍ତରିତ ହୋଇଥାଏ ଏବଂ ସଂସ୍କୃତି ବା କୌଳିକ ବିଦ୍ୟାର ଅଂଶ ବିଶେଷ ହୋଇରହିଥାଏ । ତେବେ ଗୋଟିଏ ବିଷୟରେ ପାରମ୍ପରିକ ବିଧିନିଷେଧଗୁଡ଼ିକର ମଧ ଲିପିବଦ୍ଧ ରୂପ ଦେଖାଯାଏ; ତା' ହେଉଛି ବନୌଷଧିଗୁଡ଼ିକର[୧] ସଂଗ୍ରହ ତଥା ଉପଯୋଗ । କବିରାଜି ପୋଥି ବା ଆୟୁର୍ବେଦ ଶାସ୍ତ୍ରଗୁଡ଼ିକରେ ଶତାବ୍ଦୀ ଶତାବ୍ଦୀ ଧରି ଏଭଳି ଜ୍ଞାନ ସୁରକ୍ଷିତ ହୋଇ ରହିଛି ଯଦିଓ ମୌଖିକ ସ୍ତରରେ ରହିଥିବା ଜ୍ଞାନ ତୁଳନାରେ ତା'ର ପରିମାଣ ହୁଏତ ବିଶେଷ ନୁହେଁ ।

'ବସୁନ୍ଧରା' ପକ୍ଷରୁ ନିକଟ ଅତୀତରେ କରାଯାଇଥିବା ଅନୁଧାନରୁ ଯେଉଁ ସୂଚନା ମିଳିଛି, ତଦନୁଯାୟୀ ବନୌଷଧିଗୁଡ଼ିକର ସଂଗ୍ରହ ସଂପର୍କରେ ରହିଥିବା ବିଧିନିଷେଧଗୁଡ଼ିକ ସେଗୁଡ଼ିକର ସ୍ଥାୟୀ ଉତ୍ପାଦନ (sustainability) ବା ପୁନରୁତ୍ପାଦନ ପ୍ରତି ଯେତେ ଉଦ୍ଦିଷ୍ଟ ନଥିଲା (ପ୍ରତ୍ୟକ୍ଷ ଭାବରେ), ତା' ଅପେକ୍ଷା ଅଧିକ ଉଦ୍ଦିଷ୍ଟ ଥିଲା ସେଗୁଡ଼ିକର ସର୍ବୋତ୍ତମ ଔଷଧୀୟ ସାମର୍ଥ୍ୟକୁ ସୁନିଶ୍ଚିତ କରିବା ପାଇଁ । ଔଷଧୀୟ ବୃକ୍ଷଲତା ପ୍ରାଚୀନ ଦ୍ରଷ୍ଟାମାନଙ୍କ ନିକଟରେ ଉପଭୋକ୍ତା ସାମଗ୍ରୀ (Commodity) ଅଥବା ଜଡ଼ବସ୍ତୁ ମାତ୍ର ନଥିଲା, ବରଂ ସେମାନେ ସେଗୁଡ଼ିକ ଭିତରେ କୌଣସି ଜୀବନ୍ତ ସତ୍ତା ବା ଶକ୍ତିକୁ ଦେଖୁଥିଲେ ଯାହାର

---

୧. ଯେଉଁ ଗଛଲତାଗୁଡ଼ିକ ମୁଖ୍ୟତଃ ନିଜର ଔଷଧୀୟ ଗୁଣ ଲାଗି ହିଁ ପ୍ରସିଦ୍ଧ ବା ଉପଯୋଗୀ, ସାଧାରଣ ଅର୍ଥରେ ସେଗୁଡ଼ିକୁ ହିଁ ଏଠାରେ ବନୌଷଧି ବୋଲି କୁହାଯାଇଛି ।

ଅସମ୍ମାନ କଲେ ଗଛର ଔଷଧୀୟ ଶକ୍ତି ହ୍ରାସ/ନଷ୍ଟ ହେବ ବୋଲି ସେମାନଙ୍କର ବିଶ୍ୱାସ ଥିଲା । ସେଥିପାଇଁ ବ୍ୟାବସାୟିକ ମନୋବୃତ୍ତି ନେଇ ଏଭଳି ଗଛଲତାଙ୍କ ସହିତ ଯଥେଚ୍ଛାଚାର କରିବା ପ୍ରାଚୀନ ଆଦର୍ଶର ବିରୋଧୀ ଥିଲା ଯାହା ଅନ୍ତତଃ କିଛି ପରିମାଣରେ ସେଗୁଡ଼ିକର ସଂରକ୍ଷଣରେ ସାହାଯ୍ୟ କରିଥିବ ବୋଲି ଅନୁମାନ କରାଯାଇପାରେ । ଏଇ ଅନୁମାନ ଯେ ଅଯଥାର୍ଥ ନୁହେଁ, ତା'ର ଏକ ଦୃଷ୍ଟାନ୍ତ ବି ରହିଛି । କେନ୍ଦୁଝରର ଗୋଟିଏ ଜଙ୍ଗଲାଞ୍ଚଳରେ ବିରଳ ବୃକ୍ଷ 'ଭ୍ରମରମାରୀ' ଯେତେବେଳେ ଆଉ ମିଳିଲା ନାହିଁ, ରାଜାଙ୍କୁ ସେ ଔଷଧ-କାଠ ଯୋଗାଇବା ଦାୟିତ୍ୱରେ ଥିବା ଦେହୁରୀ (ଆଦିବାସୀ ପୂଜକ) ସହଜମାରୀର ଚେର ଯୋଗାଇ ତା'ର ବିକଳ୍ପ ବ୍ୟବସ୍ଥା କଲେ । ଏଇ ଚେର ସଂଗ୍ରହ ପାଇଁ ସେ ଅନେକ ବିଧିନିଷେଧ ପାଳନ କରୁଥିଲେ, ଯଥା : ଚେର ପୂର୍ବଦିଗରୁ ଆସିବ ଏବଂ ବର୍ଷର ନିର୍ଦ୍ଦିଷ୍ଟ କେତେକ ସମୟରେ ହିଁ ଆସିବ, ଇତ୍ୟାଦି । କ୍ରମେ ଏଇ ନିୟମଗୁଡ଼ିକ ଆଉ ଠିକ୍ ଭାବେ ପାଳନ କରାଗଲା ନାହିଁ ଏବଂ ଯେତେବେଳେ ଇଚ୍ଛା ସେତେବେଳେ ଦିଗ ବିଚାର ନକରି ଚେର ସଂଗ୍ରହ କରାଗଲା । ଏପରିକି ଛୋଟ ଛୋଟ ଗଛ(ସହଜମାରୀ)ଗୁଡ଼ିକୁ ଚେର ପାଇଁ ଉପାଡ଼ି ଦିଆଗଲା । ପରିଣାମ ବଶତଃ ସ୍ଥାନୀୟ ଜଙ୍ଗଲର ସହଜମାରୀ ସଂପଦ ଲୋପ ପାଇବା ସ୍ଥିତିକୁ ଆସିଗଲା ।[୨]

ବିଧିନିଷେଧଗୁଡ଼ିକର ଉତ୍ପତ୍ତି ବା ବିକାଶ ପଛରେ ନିମ୍ନ କାରଣମାନ ରହିଥାଇପାରେ :

- ଅତୀନ୍ଦ୍ରିୟ ଅବବୋଧ

ତାନ୍ତ୍ରିକ ପ୍ରୟୋଗଗୁଡ଼ିକ ସହିତ ଜଡ଼ିତ ବିଧିନିଷେଧମାନ ସୂକ୍ଷ୍ମ ଦୃଷ୍ଟି ଅଥବା ଅତୀନ୍ଦ୍ରିୟ ଅବବୋଧରୁ ସୃଷ୍ଟି ହୋଇଛି ବୋଲି କୁହାଯାଇପାରିବ କାରଣ ସାଧାରଣ ବୁଦ୍ଧିର ଯୁକ୍ତି ଦ୍ୱାରା ଏଗୁଡ଼ିକୁ ବୁଝାଯିବା କ୍ୱଚିତ ସମ୍ଭବ ହୁଏ । ଉଦାହରଣ ସ୍ୱରୂପ, ଗୋଟିଏ ନିର୍ଦ୍ଦିଷ୍ଟ ପ୍ରୟୋଗରେ ଅନ୍ୟର ମନୋଭାବ ଜାଣିବା ପାଇଁ ଖଜୁରୀ ଗଛ ମୂଳରେ ଉଠିଥିବା କୋଇଲେଖା ଚେରର ଉପଯୋଗ ପାଇଁ ନିର୍ଦ୍ଦେଶ ରହିଛି, ଅଥଚ ସ୍ଥୂଳ ଦୃଷ୍ଟିରେ ଏକଥା ବୁଝଇବା କଷ୍ଟ ଯେ କେବଳ ଖଜୁରୀ ଗଛ ମୂଳର କୋଇଲେଖା ହେବ କାହିଁକି, ଅନ୍ୟତ୍ର ଉଠିଥିବା କୋଇଲେଖା କାହିଁକି ନୁହେଁ ।

- ସ୍ଥୂଳ ଅଭିଜ୍ଞତା :

କୋଇଲେଖା ଓ ବାଇଡ଼ଙ୍କର ମଞ୍ଜି ଚୈତ୍ରମାସରେ ସଂଗ୍ରହଣୀୟ ବୋଲି ନିର୍ଦ୍ଦେଶ ଅଛି କାରଣ ସେ ସମୟରେ ମଞ୍ଜି ସଂଗ୍ରହ ନକଲେ ସେଗୁଡ଼ିକ ପରେ ତଳେ ଖସି ପଡ଼ିବ ଯାହାକୁ ସଂଗ୍ରହ କରିବା ସହଜ ହେବ ନାହିଁ ।

---

୨. ଦେହୁରୀ ନିଜେ ଲେଖକ ନିକଟରେ ଏ ବିଷୟ ସ୍ୱୀକାର କରିଥିଲେ ।

● ବୈଜ୍ଞାନିକ ଦୃଷ୍ଟି

ଜଳମଗ୍ନ ଅଥବା କ୍ଷାରଯୁକ୍ତ ଭୂମିରୁ ବନୌଷଧିର ସଂଗ୍ରହକୁ ନିରୁତ୍ସାହିତ କରାଯିବା ପଛରେ ନିଶ୍ଚୟ କୌଣସି କାରଣ ଥିବ ଯାହା ବିଜ୍ଞାନସମ୍ମତ ।

● ବ୍ୟକ୍ତିଗତ ସ୍ୱାର୍ଥ

ପାଖରେ ରହିଥିବା ପ୍ରାକୃତିକ ସଂପଦର ସତର୍କ ଉପଯୋଗ ନକଲେ ସେଗୁଡ଼ିକ ଶେଷ ହୋଇଯିବ ଯାହା ଫଳରେ କି ଦୂରକୁ ଯାଇ ତା'ର ସଂଗ୍ରହ ପାଇଁ ଚେଷ୍ଟା କରିବାକୁ ପଡ଼ିବ ଯାହାକି ସୁବିଧାଜନକ ନୁହେଁ । ଜଣେ ବୈଦ୍ୟଙ୍କ ପାଇଁ ଚେରମୂଳ ଯୋଗାଉଥିବା ନୟାଗଡ଼ ଅଞ୍ଚଳର ଲକ୍ଷ୍ମୀଧର ପାତ୍ର ଏଇ ବିଷୟ ଦୃଷ୍ଟିରେ ରଖି ଚେରକୁ ଏଭଳି ଭାବେ ସଂଗ୍ରହ କରନ୍ତି ଯେପରିକି ଗଛ ନ ମରି ବଞ୍ଚିରହିବ ଏବଂ ଅଳ୍ପ ଦିନ ପରେ ଖୋଳିଲେ ତା'ର ଚେର ପୁଣି ଆଣିହେବ ।

ଏଇ ବିଧିନିଷେଧଗୁଡ଼ିକର ଯଥେଷ୍ଟ ପ୍ରଭାବ ରହିଛି, ଯଥା :

● ବନୌଷଧିର ସଂଗ୍ରହ ଉପରେ ପ୍ରଭାବ :

ଅନେକ ବନୌଷଧି 'ଶ୍ୱେତ' ଓ 'ରକ୍ତ' ଭେଦରେ ଦୁଇ ପ୍ରକାର ବୋଲି ଚିହ୍ନଟ ହୋଇଛି । ସେଥିରୁ କେଉଁଟିର 'ଶ୍ୱେତ' ଏବଂ କେଉଁଟିର 'ରକ୍ତ' ବର୍ଗର ଗଛକୁ ସଂଗ୍ରହ ବା ଉପଯୋଗ ସମୟରେ ପ୍ରାଥମିକତା ଦିଆଯାଇଥାଏ । ଉଦାହରଣ ସ୍ୱରୂପ, ଲାଲ୍ ଚିତାମୂଳ ଅଧିକ ବିଷାକ୍ତ ବୋଲି ଧଳା ଚିତାମୂଳକୁ ବ୍ୟବହାର କରାଯାଇଥାଏ ।

● ଔଷଧୀୟ ବୃକ୍ଷଲତାର ସଂରକ୍ଷଣ :

ବନୌଷଧିର ଆହରଣ (extraction)ରେ ଯଥେଚ୍ଛାଚାରକୁ ପ୍ରଶୟ ନଦେବା ଦ୍ୱାରା ବିଧିନିଷେଧଗୁଡ଼ିକ ସେଗୁଡ଼ିକର ସଂରକ୍ଷଣ ପାଇଁ ସାହାଯ୍ୟ କରିଥାନ୍ତି । ଉଦାହରଣ ସ୍ୱରୂପ, ପୁଷ୍ୟାନୁଗ ଚୂର୍ଣ୍ଣ ତିଆରି ପାଇଁ ଆବଶ୍ୟକ ଚେରମୂଳମାନ କେବଳ ପୁଷ୍ୟାନକ୍ଷତ୍ରଯୁକ୍ତ ତିଥିରେ ଆଣିବା ଉଚିତ ବୋଲି ନିର୍ଦ୍ଦେଶ ରହିଛି । ବର୍ଷରେ ଅଳ୍ପ କେତେ ଦିନ ମାତ୍ର ଏହି ତିଥି ପଡ଼ିଥାଏ, ଏଣୁ ନିୟମ ମାନି ଚଳୁଥିବା ବୈଦ୍ୟ ସାରା ବର୍ଷରେ ଏଇ ଚେରମୂଳଗୁଡ଼ିକର ସୀମିତ ସଂଗ୍ରହର ସୁଯୋଗ ହିଁ ପାଇଥାନ୍ତି, ବ୍ୟାପକ ସଂଗ୍ରହର ନୁହେଁ ।

● ବନୌଷଧିର ସଂଗ୍ରହ / ବଜାର ଦର ଉପରେ ପ୍ରଭାବ :

ଗୋଟିଏ ଗଛର ଦୁଇଟି 'ଜାତି' (ଯଥା : ଶ୍ୱେତ ଓ ରକ୍ତ) ଭିତରୁ କେଉଁଟି ଭଲ ଏବଂ କେଉଁଟି ନିକୃଷ୍ଟ - ଏ ବିଷୟରେ ଗୁରୁତ୍ୱ ଦେବା ଫଳରେ ବିଧିନିଷେଧଗୁଡ଼ିକ ପ୍ରକାରାନ୍ତରେ ସେଗୁଡ଼ିକର ଦରଦାମ୍‌କୁ

ମଧ ପ୍ରଭାବିତ କରିଥା'ନ୍ତି । ବିଶେଷତଃ 'ଉତ୍କୃଷ୍ଟ' ଔଷଧିଟି ଯଦି ବିରଳ ହୋଇଥାଏ, ତା'ହେଲେ ତା'ର ଦର ବଢ଼ିଯାଏ । ରାଜ୍ୟ ବାହାରୁ ଆମଦାନୀ ହେଉଥିବା ରାସ୍ନା 'ଉତ୍କୃଷ୍ଟ' ଏବଂ ଘରବାଡ଼ି ବା ଜଙ୍ଗଲରେ ମଲାଙ୍ଗ ରୂପେ ଗଛରେ ମାଡ଼ିଥିବା ରାସ୍ନା 'ନିକୃଷ୍ଟ' (?)- ଏ ଧରଣର ବିଶ୍ୱାସରୂପୀ ବିଧିନିଷେଧ ଗୋଟିଏ ସ୍ଥାନୀୟ ତଥା ସହଜଲଭ୍ୟ ପ୍ରାକୃତିକ ସଂପଦ (ମଲାଙ୍ଗ ଜାତୀୟ ରାସ୍ନା ବା Vanda roxburghii)ର ମୂଲ୍ୟକୁ ଗୌଣ କରିଦେଇଛି ।

- **ପ୍ରାଥମିକ ସଂଗ୍ରହକାରୀଙ୍କ ଜୀବିକା ଉପରେ ପ୍ରଭାବ :**

ବିଧିନିଷେଧର ପ୍ରଭାବ ଚାହିଦା (demand) ଉପରେ ପଡ଼େ ଏବଂ ପ୍ରାଥମିକ ସଂଗ୍ରହକାରୀମାନେ ତଦନୁଯାୟୀ ଲାଭବାନ ବା କ୍ଷତିଗ୍ରସ୍ତ ହୋଇପାରନ୍ତି । ଚାହିଦା ଥିବା ବନୌଷଧିଟି ବିରଳ ହେଲେ ତା'ର ସୁଯୋଗ ନେଇ ସେମାନେ ହୁଏତ ଅଧିକ ମୂଲ୍ୟ ଦାବି କରିପାରନ୍ତି ବା ପାଇପାରନ୍ତି,[୩] ଅପର ପକ୍ଷରେ ପ୍ରଚୁର ପରିମାଣରେ ଉପଲବ୍ଧ ଗଛଟିଏ ହୁଏତ ଚାହିଦା ଅଭାବରୁ ସେମାନଙ୍କ ପାଇଁ ଜୀବିକାର ଆଧାର ହୋଇପାରେନାହିଁ ।

- **ଔଷଧୀୟ ବୃକ୍ଷଲତାର ମନୁଷ୍ୟକୃତ ବଂଶବିସ୍ତାର ଉପରେ ପ୍ରଭାବ :**

ଅନ୍ୟ ଜାତିର ଅରଖ ଅପେକ୍ଷା ଶ୍ୱେତ ଅରଖ ଉତ୍କୃଷ୍ଟ, ତେଣୁ ଲୋକେ ଶ୍ୱେତ ଅରଖକୁ ହିଁ ଲଗାଇଥାନ୍ତି । ସେହିଭଳି ପାତାଳଗରୁଡ଼ ଲଗାଇବା ବେଳେ ମଧ ଜାତି ବିଚାର ('ଗାଈଆ', 'ମଇଁଷିଆ', ଇତ୍ୟାଦି) କରାଯାଇଥାଏ ।

ବାସ୍ତବ ଉପଯୋଗିତା ଭିତ୍ତିରେ ବିଧିନିଷେଧଗୁଡ଼ିକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରିବ, ଯଥା :

୧. ପରିବେଶ - ଅନୁକୂଳ ସୂତ୍ରାବଳୀ (eco-friendly thumb rules) :

ଏଗୁଡ଼ିକ ପ୍ରତ୍ୟକ୍ଷ ବା ପରୋକ୍ଷ ରୂପେ ପରିବେଶର ସୁରକ୍ଷା ଅଥବା ଔଷଧୀୟ ବୃକ୍ଷଲତାର ସଂରକ୍ଷଣରେ ସହାୟକ ହୁଅନ୍ତି ।

୨. ପରିବେଶ-ନିରପେକ୍ଷ ସୂତ୍ରାବଳୀ (eco-independent thumb rules) :

ଏଗୁଡ଼ିକ ପରିବେଶ-ସୁରକ୍ଷା ଅଥବା ସ୍ଥାୟୀ ଉତ୍ପାଦନ ଦିଗରେ କୌଣସି ସାହାଯ୍ୟ କରିନଥା'ନ୍ତି ।

ପ୍ରଣେତାଙ୍କର ଅବବୋଧ (perception) ବା ଦୃଷ୍ଟି (vision)ର ସ୍ତର ଅନୁଯାୟୀ ଅନ୍ୟ ଏକ ପ୍ରକାର ଶ୍ରେଣୀ ବିଭାଗ ମଧ କରାଯାଇପାରେ । ଯଥା :

---

୩. ତଥାକଥିତ ଲାଲ ଭୁଇଁକଖାରୁ ଏତେ ବିରଳ ହୋଇପଡ଼ିଛି ଯେ ତା'ର ଗଛ ଓ କନ୍ଦ ଆଣିଦେଲେ ଏକ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଦେଇପାରିବେ ବୋଲି ଜଣେ ବୈଦ୍ୟ ଲେଖକଙ୍କୁ କହିଥିଲେ ।

- **ଉତ୍କୃଷ୍ଟ / ଶାସ୍ତ୍ରୀୟ :**

ଏଗୁଡ଼ିକ କୌଣସି ଅଜ୍ଞାନତା ଅଥବା ଅନ୍ଧବିଶ୍ୱାସ ଦ୍ୱାରା ସୃଷ୍ଟି ହୋଇନଥାଏ, ବରଂ ଯଥାର୍ଥ ଦୃଷ୍ଟି ଦ୍ୱାରା ହିଁ ସୃଷ୍ଟି ହୋଇଥାଏ ।

- **ନିକୃଷ୍ଟ / ଅଶାସ୍ତ୍ରୀୟ :**

ଏଗୁଡ଼ିକ ହୁଏତ ଅର୍ଥହୀନ ହୋଇଥାଏ କିମ୍ବା ଅନ୍ଧବିଶ୍ୱାସ ଦ୍ୱାରା ପ୍ରେରିତ ହୋଇ ରହିଥାଏ । ଉଦାହରଣ ସ୍ୱରୂପ, କେତେକ ଆଦିବାସୀ ସଂପ୍ରଦାୟରେ ବିଶ୍ୱାସ ରହିଛି ଯେ ଚେରମୂଳ ସଂଗ୍ରହ କରିବାକୁ ହେଲେ ନିତ୍ୟକର୍ମ ଶେଷ କରିବା ବିନା ହିଁ ଖୁବ୍ ସକାଳେ ଯିବାକୁ ହେବ ଏବଂ ଗଛ ପାଖରେ ପହଞ୍ଚି ମାଟି ବା ଗଛକୁ ଶାବଳ ବା ଟାଙ୍ଗିଆରେ ତିନି ଥର ଆଘାତ କରିବା ପରେ ନିତ୍ୟକର୍ମ ଶେଷ କରିବାକୁ ଯାଇପାରିବ ଏବଂ ଚେରମୂଳ ବି ଆଣିପାରିବ । ଏ ପ୍ରକାର ବିଧିନିଷେଧ ନିଜର ସ୍ୱଭାବ ତଥା ପରିବେଶଗତ ପ୍ରଭାବ ଦୃଷ୍ଟିରୁ କେତେଦୂର ନିକୃଷ୍ଟ ଅଥବା ନିରର୍ଥକ, ସେକଥା କହିବା ନିଷ୍ପ୍ରୟୋଜନ ।

ଶାସ୍ତ୍ରୀୟ ବିଧିନିଷେଧର ଅନେକ ଦୃଷ୍ଟାନ୍ତ ରହିଛି । ଯଥା, ନିମ୍ନ ପ୍ରକାର ବନୌଷଧିର ସଂଗ୍ରହକୁ ବାରଣ କରାଯାଇଛି :

- ଉଇହୁଙ୍କା, ମନ୍ଦିର, କୂଅ, ଜଳମୟ ଭୂମି[୪] [ଯେଉଁଠି ପାଣି ଜମି ରହିଥାଏ ଅଥଚ ଯାହା କୌଣସି ଜଳାଧାର ଶ୍ରେଣୀ (ଅର୍ଥାତ୍ ପୋଖରୀ, କୂଅ ଇତ୍ୟାଦି)ର ଅନ୍ତର୍ଭୁକ୍ତ ନୁହେଁ], ଅପବିତ୍ର ସ୍ଥାନ, ଶ୍ମଶାନ, କ୍ଷାର ଅଂଶ ଥିବା ମାଟି ଇତ୍ୟାଦିରେ ଜନ୍ମିଥିବା ଗଛଲତା ।
- ପୋଡ଼ିଯାଇଥିବା, ପୋକ ଖାଇଥିବା ଅଥବା କାକର ଦ୍ୱାରା ବିଶେଷ ପ୍ରଭାବିତ ବନୌଷଧି ।
- ଅସମୟୋତ୍ପନ୍ନ (ନିଜ ଋତୁ ଭିନ୍ନ ଅନ୍ୟ ଋତୁରେ ଜନ୍ମିଥିବା), ଦୂଷିତ ତଥା ନିଜର ପ୍ରକୃତ ଆକାରରୁ ଭ୍ରଷ୍ଟ (ଅତି ଦୀର୍ଘ ଓ ଅତି ନ୍ୟୂନ) ଏବଂ ଅତି ପୁରାତନ ବନୌଷଧି । (ଇତ୍ୟାଦି)

ଏହା ବ୍ୟତୀତ ଅନ୍ୟ ଅନେକ ପ୍ରକାର ବିଧିନିଷେଧ ମଧ ପ୍ରଚଳିତ ଥିଲା । ଯଥା : ପତ୍ର, ମୂଳ, ଛାଲି ଏବଂ ରସ ସଂଗ୍ରହ ପାଇଁ ଯଥାକ୍ରମେ ବର୍ଷା/ବସନ୍ତ, ଗ୍ରୀଷ୍ମ/ଶୀତ, ଶରତ ଏବଂ ହେମନ୍ତ ଋତୁ ଉପଯୁକ୍ତ ବୋଲି କୁହାଯାଇଥିଲା । ବୈଦ୍ୟ/କବିରାଜ ଅଥବା ଶାସ୍ତ୍ରାନୁରାଗୀ ବ୍ୟକ୍ତିମାନେ ଏସବୁ ବିଧିନିଷେଧକୁ ଆଂଶିକ ବା ସଂପୂର୍ଣ୍ଣ ରୂପେ ପାଳନ କରୁଥିଲେ କାରଣ ସଂଗୃହୀତ ଔଷଧ ପ୍ରଭାବକାରୀ ହେଉ ବୋଲି ସେମାନେ ଚାହୁଁଥିଲେ; ବିକ୍ରି କରିବାରେ ସେମାନଙ୍କର ଦାୟିତ୍ୱ/ଆଗ୍ରହ ଶେଷ ହୋଇଯାଉନଥିଲା ।

---

୪. ଜଳଜ ବା ଅର୍ଦ୍ଧ-ଜଳଜ (Semi-aquatic) ଔଷଧୀୟ ଉଦ୍ଭିଦ ପ୍ରତି ଏ ନିୟମ ପ୍ରଯୁଜ୍ୟ ହୋଇଥିବ ବୋଲି ମନେହୁଏ ନାହିଁ କାରଣ ଜଳମୟ ଭୂମି ସେଗୁଡ଼ିକର ପ୍ରାକୃତିକ ଜନ୍ମସ୍ଥାନ ।

ବିଧିନିଷେଧଗୁଡ଼ିକର ଅନ୍ୟ ଏକ ରୂପ ବି ପ୍ରଚଳିତ ଥିଲା ଯାହାକୁ ଆମେ ପାରିପାର୍ଶ୍ୱିକ ସଂକେତକ (Ecological Indicator) ବୋଲି କହିପାରିବା । ଏଗୁଡ଼ିକ ଦୁଇ ପ୍ରକାରର ହୋଇପାରେ, ଯଥା :

- ଅସ୍ତିତ୍ୱ-ସଂକେତକ (**Indicator of availability**): ଉଦାହରଣ ସ୍ୱରୂପ, ଅର୍ଜ୍ଜୁନ ଗଛ ସାଧାରଣତଃ ପାଣି ଥିବା ସ୍ଥାନ ଗୁଡ଼ିକ ନିକଟରେ ଦେଖାଯାଇଥାଏ ବୋଲି ଝରଣା ବା ନଦୀକୂଳ ଭଳି ଅଞ୍ଚଳରେ ଲୋକେ ଏଗୁଡ଼ିକୁ ଖୋଜିଥାନ୍ତି । ତେଣୁ ଏ କ୍ଷେତ୍ରରେ ପାଣି/ଝରଣା/ନଦୀ ଇତ୍ୟାଦିକୁ ଅର୍ଜ୍ଜୁନ ଗଛର ଅସ୍ତିତ୍ୱ-ସଂକେତକ ବୋଲି କୁହାଯାଇପାରିବ ।

- ଦ୍ରବ୍ୟଶକ୍ତି-ସଂକେତକ (**Indicator of potency**)

  ବିଶ୍ୱାସ କରାଯାଇଥାଏ ଯେ ଔଷଧୀୟ ଉଦ୍ଭିଦଟିଏ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରକାର ପରିବେଶରେ ଯେତିକି ଶକ୍ତି-ସଂପନ୍ନ ବା ପ୍ରଭାବକାରୀ (ଦ୍ରବ୍ୟଗୁଣ ଦୃଷ୍ଟିରୁ) ହେବାର ସମ୍ଭାବନା ରଖିଥାଏ, ଭିନ୍ନ ଏକ ପରିବେଶରୁ ସେ ଉଦ୍ଭିଦ ସଂଗ୍ରହ କରି ଉପଯୋଗ କଲେ ତା'ର ପ୍ରଭାବ ହୁଏତ କମ୍ ହୋଇଥାଏ । ଯେଉଁ ପରିବେଶ ବା ପରିସ୍ଥିତି ବନୌଷଧିର ଗୁଣକୁ ସର୍ବାଧିକ ପରିମାଣରେ ଅକ୍ଷୁର୍ଣ୍ଣ ରଖିପାରେ, ତାକୁ ଦ୍ରବ୍ୟଶକ୍ତି-ସଂକେତକ ବୋଲି କୁହାଯାଇପାରେ । ଯଥା : ବାଉଁଶ ବଣର ତାଳମୂଳୀ ଏବଂ ଶାଳଗଛ ମୂଳର ଭୂଇଁକଖାରୁ, ଇତ୍ୟାଦି (ଲୋକବିଶ୍ୱାସ ଅନୁଯାୟୀ) ।

ଏ ଦୁଇ ପ୍ରକାର ସଂକେତକର ବାସ୍ତବ ପ୍ରଭାବ କେତେ, ସେକଥା ନିମ୍ନ ଦୃଷ୍ଟାନ୍ତ ଦୁଇଟିରୁ ଅଧିକ ସ୍ପଷ୍ଟ ହୋଇପାରିବ :

- ବଚ ପାଣିକୂଳରେ ହୁଏ ବୋଲି ଜାଣି ଅନେକ ସ୍ଥାନରେ ଗ୍ରାମବାସୀମାନେ ନଳକୂଅ ନିକଟରେ ତାକୁ ଲଗାଇଥାନ୍ତି । କେନ୍ଦୁଝର ଓ ମୟୁରଭଞ୍ଜ ଜିଲ୍ଲାର କେତେକ ଅଞ୍ଚଳରେ ବଚର ଏପ୍ରକାର ବଂଶବିସ୍ତାର ଗାଁ' ଗାଁ'ରେ ଦେଖାଯାଏ ।

- ଖଟ୍ଟା ଫଳ (କମଳା, ଲେମ୍ବୁ, ତେନ୍ତୁଳି) ହେଉଥିବା ଗଛର ଗୁଳୁଚି ବ୍ୟବହାର ଉପଯୋଗୀ ନୁହେଁ ବୋଲି ଏକ ସିଦ୍ଧାନ୍ତ ରହିଛି କାରଣ ଗୁଳୁଚି ପିତ୍ତନାଶକ ହୋଇଥିବା ବେଳେ ଖଟ୍ଟାଫଳର ଗଛଗୁଡ଼ିକ ପିତ୍ତକାରକ ହୋଇଥା'ନ୍ତି ଏବଂ ଏଇ ପାରସ୍ପରିକ ବିରୋଧାଭାସ ଗୁଳୁଚିର ଗୁଣ ନଷ୍ଟ କରିଥାଏ ବୋଲି ବିଶ୍ୱାସ କରାଯାଏ ।

ସହସ୍ରାଧିକ ବନୌଷଧି ରହିଛି ଏବଂ ପ୍ରତ୍ୟେକର ସଂଗ୍ରହ, ଉପଯୋଗ ତଥା ବଂଶବିସ୍ତାର ସଂକ୍ରାନ୍ତୀୟ ବିଧିନିଷେଧ ଉଲ୍ଲେଖ କରିବାକୁ ଗଲେ ଏକ ବିରାଟ ଗ୍ରନ୍ଥ ହେବ ଯାହାକି ପ୍ରସ୍ତୁତ ପ୍ରକାଶନର ସୀମା ବହିର୍ଭୂତ । ତେଣୁ ବିଭିନ୍ନ ଦୃଷ୍ଟିରୁ ବିଚାର କରି ନିମ୍ନ କେତୋଟି ବନୌଷଧିକୁ ଆଲୋଚନା ଲାଗି ଗ୍ରହଣ କରାଯାଇଛି :

୧. ନାଗେଶ୍ୱର (**Mesua ferrea**) :

ଏହାର ଫୁଲ, ଫଳ, ଛାଲି ଓ ପତ୍ର ଔଷଧରେ ଲାଗୁଥିଲେ ମଧ ପ୍ରଯୁଜ୍ୟ ଅଙ୍ଗ (ଉପଯୋଗୀ ଅଂଶ) କହିଲେ ଆୟୁର୍ବେଦ ଶାସ୍ତ୍ରରେ ନାଗେଶ୍ୱରର ପୁଂ-କେଶର ପ୍ରତି ନିର୍ଦ୍ଦେଶ କରାଯାଇଥାଏ । ସେଥିପାଇଁ ଶୁଖିଲା ଫୁଲ ପାଇଁ ସଂଗ୍ରହକାରୀ ୨୦ରୁ ୨୫ଟଙ୍କା ପର୍ଯ୍ୟନ୍ତ (କେଜି ପ୍ରତି) ପାଉଥିବା ବେଳେ କେବଳ କେଶର ଯୋଗାଇ ପାରିଲେ ୭୦ରୁ ୧୦୦ ଟଙ୍କା ପର୍ଯ୍ୟନ୍ତ ପାଇବାର ସମ୍ଭାବନା ଥାଏ ।

ଆର୍ଦ୍ର ଚିରହରିତ (ବା ଉପ-ଚିରହରିତ୍) ଜଙ୍ଗଲରେ ଏ ଗଛ ବିଶେଷ ଦେଖାଯାଏ । ପାଣି ଜମି ନ ରହୁଥିବା ଉର୍ବର ମାଟିରେ ଏ ଗଛ ଭଲ ହୁଏ ଏବଂ ଛାଇରେ ମଧ ଭଲ ବଢ଼ିପାରେ । ଅକ୍ଟୋବର-ନଭେମ୍ବର ମାସରେ ଫଳରୁ ମଞ୍ଜି ସଂଗ୍ରହ କରି ଭଲ ଭାବେ ଶୁଖାଇବା ପରେ ଯଥାଶୀଘ୍ର ଚାରା ପ୍ରସ୍ତୁତି ପାଇଁ ଅଥବା ସିଧାସଳଖ ଗଛ ଲଗାଇବା ପାଇଁ ବୁଣି/ପୋତି ଦେଲେ ୧୦୦ରେ ୮୦ଟି ମଞ୍ଜିରୁ ଗଜା ବାହାରିବାର ସମ୍ଭାବନା ରହେ । ସ୍ମରଣଯୋଗ୍ୟ ଯେ ମଞ୍ଜିର ଅଙ୍କୁରୋଦ୍‌ଗମ୍ ଶକ୍ତି ମାତ୍ର ୧ ମାସ ପର୍ଯ୍ୟନ୍ତ ରହେ ଏବଂ ଏ ଗଛ ଖୁବ୍ ଧୀରେ ବଢ଼ିଥାଏ ।

ଅପ୍ରେଲରୁ ଜୁଲାଇ ମାସ ମଧରେ ନାଗେଶ୍ୱର ଫୁଲ ହୋଇଥାଏ । ଧଳାରଙ୍ଗର ଏଇ ସୁଗନ୍ଧିତ ଫୁଲ ଆୟୁର୍ବେଦ ମତରେ କଷାୟ, ରୁକ୍ଷ, ଲଘୁ ଓ ଉଷ୍ଣ ଏବଂ ଜ୍ୱର, କୁଷ୍ଠ, ବିସର୍ଗ, ବିଷଦୋଷ, କଫ, ପିତ୍ତ ତଥା ମସ୍ତିଷ୍କ ରୋଗରେ ଉପକାରୀ । ହଜମ କରାଇବା ତଥା ଭୋକ ବଢ଼ାଇବାର ଶକ୍ତି ମଧ ଏଥିରେ ରହିଛି । ତା'ଛଡ଼ା ବନ୍ଧ୍ୟା ଦୋଷ ଏବଂ ପ୍ରଦର ରୋଗରେ ମଧ ଏହାର ଉପକାରୀ[୫] । ଫୁଲର ପରାଗ ବଳ-, କାନ୍ତି- ତଥା ରୁଚିବର୍ଦ୍ଧକ ଏବଂ ବନ୍ଧ୍ୟା ଦୋଷ, ଅର୍ଶଜନିତ ରକ୍ତସ୍ରାବ ଆଦିରେ ପ୍ରୟୋଗ କରାଯାଇଥାଏ । ହଳଦିଆ ରଙ୍ଗର କେଶରକୁ ହଳଦୀ ସହିତ ବାଟି ଲଗାଇଲେ ବିଭିନ୍ନ ଚର୍ମରୋଗ (ଯାଦୁ, କାଛୁ ଇତ୍ୟାଦି) ଏବଂ ମହୁ ସହିତ ଭଲଭାବେ ବାଟି ଆଖିରେ କଜ୍ଜଳ ପରି ଲଗାଇଲେ ଆଖିଧରା, ଆଲୁଅ, ଅନ୍ଧାରକଣା, ଚାଳିଶା, ପରଳ ପଡ଼ିବା ଇତ୍ୟାଦି ଯାବତୀୟ ଚକ୍ଷୁରୋଗ ଭଲ ହୋଇଯାଏ ବୋଲି କୁହାଯାଇଛି । (ମିଶ୍ର : ୧୯୯୧; ଶତପଥୀ : ପ୍ରକାଶକାଳ ଅଜ୍ଞାତ)

ପତ୍ରକୁ ଛେଚି ବାହାର କରାଯାଇଥିବା ରସକୁ ଅଳ୍ପ ମହୁ ଅଥବା ମିଶ୍ରିଗୁଣ୍ଡ ସହିତ ସେବନ କଲେ ଗଳ କ୍ଷତ, ଗଳଗଣ୍ଡ, ସ୍ୱରଭଙ୍ଗ ଆଦି ବିଭିନ୍ନ ପ୍ରକାର କଣ୍ଠରୋଗ ଭଲହୁଏ । ଏହା ବ୍ୟତୀତ ଅନ୍ୟ ଅନେକ ପ୍ରକାର ଉପଯୋଗିତା ମଧ ଏ ଗଛର ରହିଛି ।

ଛୁରିଅନା (Mammea longifolia) ଭଳି କେତେକ ଗଛର ଫୁଲକୁ ମଧ ନାଗେଶ୍ୱର ଫୁଲ ଭଳି/ରୂପେ ବ୍ୟବହାର କରାଯାଇଥାଏ; କିନ୍ତୁ ନାଗେଶ୍ୱର ପତ୍ର ବର୍ଚ୍ଛାକାର ହୋଇଥିବା ବେଳେ ଛୁରିଅନା ପତ୍ର ଅଣ୍ଡାକାର ଏବଂ ପ୍ରକୃତ ନାଗେଶ୍ୱର (ନାଗକେଶର/ନାଗକେଦାର) Mesua ferreaକୁ ହିଁ ବୁଝାଇଥାଏ ।

---

୫. ଚହ୍ଲାରେ ବାଟି ପିଇଲେ ଶ୍ୱେତ-ପ୍ରଦର ନଷ୍ଟ ହୁଏ ବୋଲି କୁହନ୍ତି । ପଥ୍ୟ : ଚହ୍ଲାଭାତ ।

## ୨. ପାତାଳ ଗରୁଡ଼ (**Rauvolfia serpentina**) :

ପୌରାଣିକ ମତରେ ଗରୁଡ଼ ସାପର ଶତ୍ରୁ; ସେଇଭଳି ଅତି ଗଭୀରକୁ ଯାଉଥିବା ପାତାଳ ଗରୁଡ଼ ଗଛର ଚେର ମଧ ସାପ ବିଷର ପ୍ରଭାବ କାଟି ଦେଇପାରେ ବୋଲି କୁହାଯାଏ ।

ଏଇ ଛୋଟ ଗଛଟି ବିଭିନ୍ନ ପ୍ରକାର ଜଳବାୟୁ ତଥା ମାଟିରେ ବଢ଼ିଥାଏ, ତେବେ :

- ଅତି ଖରା ସହିପାରେ ନାହିଁ ।
- ମୂଳରେ ୨/୩ ଦିନରୁ ଅଧିକ କାଳ ଧରି ପାଣି ରହିଲେ ଏହାର ବିଶେଷ କ୍ଷତି ଘଟେ; ଏବଂ
- ବର୍ଷା ବିରଳ ଅଞ୍ଚଳରେ ଖରାଦିନେ ଜଳସେଚନର ବ୍ୟବସ୍ଥା ଆବଶ୍ୟକ କରେ ।

ମଞ୍ଜି, କନ୍ଦ କିମ୍ବା କାଣ୍ଡରୁ ପାତାଳଗରୁଡ଼ର ବଂଶବିସ୍ତାର କରାଯାଇପାରେ । ମୂଳ ବା କାଣ୍ଡରେ ଛୋଟ ଖଣ୍ଡମାନ ପୋତି ଗଛ କରିବା ଅପେକ୍ଷାକୃତ ସହଜ, କିନ୍ତୁ ଅନ୍ୟାନ୍ୟ କାରଣ ବିବେଚନା କଲେ ମଞ୍ଜି ବ୍ୟବହାର କରିବା ଅଧିକ ଯଥାର୍ଥ ବୋଧ ହୋଇଥାଏ କାରଣ :

- ମୂଳ(କନ୍ଦ)କୁ ବଂଶବିସ୍ତାର ପାଇଁ ରଖି ଦିଆଗଲେ ବିକ୍ରିଯୋଗ୍ୟ ଚେରର ପରିମାଣ କମିଯାଏ ।
- ମଞ୍ଜିରୁ ବାହାରିଥିବା ଗଛର ଚେର ଅଧିକ ଗୁଣକାରକ ବୋଲି ମଧ ଜଣାଯାଇଛି (ଇତ୍ୟାଦି) ।

ମଞ୍ଜିରୁ ଏହାର ବଂଶବିସ୍ତାର କରିବା ସହଜ ନୁହେଁ । ପ୍ରଥମତଃ, ମଞ୍ଜି ସଂଗ୍ରହ ଏକ କଷ୍ଟସାଧ ବ୍ୟାପାର; ଦ୍ୱିତୀୟତଃ, ମଞ୍ଜିର ଅଙ୍କୁରୋଦ୍‌ଗମ୍ ଶକ୍ତି ଅତି କ୍ଷୀଣ । ଜୁନ ଠାରୁ ଅକ୍ଟୋବର-ନଭେମ୍ବର ମଧରେ ପାକଳ ଫଳରୁ ସଦ୍ୟ ସଂଗୃହୀତ ମଞ୍ଜିରେ ଏହି ଶକ୍ତି ସର୍ବାଧିକ ଥାଏ, କିନ୍ତୁ ସଂଗ୍ରହ କରିବା ଓ ବୁଣିବାର ସମୟ ଭିତରେ ପାର୍ଥକ୍ୟ ଯେତେ ବଢ଼ିବ, ଅଙ୍କୁରୋଦ୍‌ଗମ୍ ଶକ୍ତି ସେତିକି କମିଯାଏ । ବାୟୁରୁଦ୍ଧ ଟିଣଡବାରେ ପାକଳ ମଞ୍ଜିକୁ ସଂରକ୍ଷଣ କରି ରଖିଲେ ହିଁ ପ୍ରାୟ ୬ ମାସ ପର୍ଯ୍ୟନ୍ତ ଏହି ଶକ୍ତି ବଜାୟ ରହିପାରେ ।

ମଞ୍ଜି ବୁଣି ଚାରା କରିବା ଆବଶ୍ୟକ ହୋଇଥାଏ କାରଣ ସିଧାସଳଖ ମଞ୍ଜି ପୋତି ଗଛ ବଢ଼ାଇବାରେ ସଫଳତାର ହାର ଅଳ୍ପ । ଗଭୀର ହଳ କରାଯାଇ ଭଲଭାବେ ଖତ ଦିଆଯାଇଥିବା ଜମିରେ ଗୋଟିଏ ରାତି ଭିଜାଇ ରଖାଯାଇଥିବା ମଞ୍ଜିକୁ ୭.୫ ସେ.ମି. ଦୂରତା ତଥା ୦.୬ ସେ.ମି. ଗଭୀରତା ବିଶିଷ୍ଟ ଗାତମାନଙ୍କରେ ମଇ ମାସର ଦ୍ୱିତୀୟ ପକ୍ଷ ଆରମ୍ଭରେ ପୋତି ଦିଆଯାଏ । ଗୋଟିଏ ହେକ୍ଟର ଜମି ପାଇଁ ଆବଶ୍ୟକ ପରିମାଣରେ ଚାରା ୦.୦୫ ହେକ୍ଟର ଜମିରେ ୫.୫ କେଜି ମଞ୍ଜି ବୁଣିବା ପରେ ମିଳିଥାଏ ।

ଚାରା ଲଗାଇବା ପୂର୍ବରୁ ଜମିକୁ ଭଲଭାବେ ହଳ କରାଯାଇଥାଏ ଏବଂ ହେକ୍ଟର ପ୍ରତି ପ୍ରାୟ ୩୦-୩୫ ଗାଡ଼ି (ଶଗଡ଼) ଖତ ଦିଆଯାଇଥାଏ । ବର୍ଷାଋତୁରେ ଯତ୍ନ ସହକାରେ ଚାରାଗୁଡ଼ିକ ବାହାର କରି ୧୫/୨୦ ସେ.ମି. ଗଭୀର ଗାତମାନଙ୍କରେ ତୁରନ୍ତ ଲଗାଇ ଦିଆଯାଏ । ଗଛଗୁଡ଼ିକ ଯେପରି ପାଣି ପାଇବ,

ଅଥଚ ମୂଳରେ ଅଧିକ ସମୟ ପାଣି ଜମି ନରହିବ; ତା'ର ବ୍ୟବସ୍ଥା ମଧ କରିବାକୁ ହୁଏ । ବର୍ଷାଋତୁର ଆରମ୍ଭରେ ଥରେ ଏବଂ ପୁଣି ଡିସେମ୍ବର ମାସରେ; ଏପରି ଦୁଇଥର ଘାସ ବାଛିବାକୁ ହୋଇଥାଏ ଏବଂ କୋଡ଼ାଖୋସା ସମୟରେ ଖତ ଦିଆଗଲେ ଅଧିକ ଅମଳ (ଚେର) ମିଳିଥାଏ । ଉଲ୍ଲେଖଯୋଗ୍ୟ ଯେ ୭ରୁ ୧୨ ସେ.ମି. ଉଚ୍ଚର ଚାରାଗୁଡ଼ିକୁ ପରସ୍ପର ଠାରୁ ପ୍ରାୟ ଏକ ମିଟର ଦୂରତାରେ ଲଗାଇବାକୁ ହୋଇଥାଏ ଏବଂ ଲଗାଇବାର ୨/୩ ବର୍ଷ ପରେ ଚେର ଅମଳ କରାଯାଇଥାଏ । ପ୍ରତି ଗଛରୁ ପ୍ରାୟ ୧୦୦ ଗ୍ରାମ ଚେର ମିଳିଥାଏ ଏବଂ ପ୍ରଥମ ଅମଳରେ ହିଁ ଏକର ପ୍ରତି ପ୍ରାୟ ୫୦୦୦ ବା ଅଧିକ ଟଙ୍କାର ବାସ୍ତବ ଲାଭ (net-profit) ମିଳିବାର ସଂଭାବନା ଥାଏ ।

ଲଗାଯିବା ପରେ ଗଛରେ ଫୁଲ ହେବା ପାଇଁ ପ୍ରାୟ ୬ ମାସ ଲାଗିଥାଏ । ଜୁଲାଇରୁ ନଭେମ୍ବର ମାସ ଭିତରେ ଫଳ ପାଚିଥାଏ, କିନ୍ତୁ ତୁରନ୍ତ ସଂଗ୍ରହ ନକଲେ ପାଚିଲା ଫଳ ଝଡ଼ିପଡ଼େ; ତେଣୁ ସପ୍ତାହକୁ ଦୁଇଥର ଏଗୁଡ଼ିକୁ ସଂଗ୍ରହ କରିନେବା ଉଚିତ । ମାଂସଳ ଅଂଶ ଅଲଗା କରିବା ପାଇଁ ଫଳକୁ ପୁରୁଣା ଅଖା ଅଥବା ଖଦଖଦଡ଼ିଆ ଚଟାଣରେ ଘଷିଦେବା ପରେ ଭଲଭାବେ ଧୋଇ ସଫା କରାଯାଏ ଏବଂ ଖରାରେ ଶୁଖାଇ ଦିଆଯାଏ । ସ୍ମରଣଯୋଗ୍ୟ ଯେ ଚାଷ କରାଯାଇଥିବା ଗଛ ଅନ୍ତତଃ ୨/୩ ବର୍ଷର ହେବା ପରେ ହିଁ ସେଥିରୁ ମଞ୍ଜି ସଂଗ୍ରହ କରାଯିବା ଉଚିତ, ତା' ବି ଚେର ସଂଗ୍ରହର ପୂର୍ବରୁ ।

ଚେରସଂଗ୍ରହ ସମୟରେ ମୂଳର କିଛି ଅଂଶ ଅବଶିଷ୍ଟ ରଖି ଏବଂ କାଣ୍ଡରୁ ଅଧିକାଂଶ ଭାଗ କାଟିଦେଇ ଗଛଟିକୁ ପୁଣି ଲଗାଇଦେଲେ ମଧ ସଫଳ ବଂଶ ବିସ୍ତାର ସମ୍ଭବ ହୋଇଥାଏ । ଜଳସେଚିତ ଜମିରେ ମଇରୁ ଜୁଲାଇ ମାସ ଭିତରେ ଏଇ ମୂଳ ଖୁଣ୍ଟାଗୁଡ଼ିକର ପ୍ରତିରୋପଣ କରିବାକୁ ହୁଏ । ଏ ପଦ୍ଧତି ସହଜ, କିନ୍ତୁ ଏଥିରେ ଗୋଟିଏ ଗଛରୁ ମାତ୍ର ଗୋଟିଏ ଗଛ କରିବା ହିଁ ସମ୍ଭବ ହୁଏ, ଅଧିକ ନୁହେଁ । ପାତାଳ ଗରୁଡ଼ର ଚେର ଖୋଳିବା ପୂର୍ବରୁ ଥରେ ଜଳସେଚନ କରିଦେଲେ ଖୋଳିବାରେ ସୁବିଧା ହୁଏ । ଚେରକୁ ଆଣିବା ପରେ ଭଲ ଭାବରେ ଧୋଇ ଶୁଖାଇ ଦିଆଯାଏ । ତା'ପରେ ଛୋଟ ଛୋଟ ଖଣ୍ଡ (ପ୍ରାୟ ୬ ଇଞ୍ଚ) କରି କାଟି ବିକ୍ରି ପାଇଁ ପଠାଯାଏ । ଏହାର ସଂଗ୍ରହ ମୂଲ୍ୟ ପ୍ରାୟ ୪୦ଟଙ୍କା (ପ୍ରତି କେଜି) ହୋଇଥାଏ । ଜରିବସ୍ତାରେ ବାନ୍ଧି ରଖାଗଲେ ଚେର ବହୁଦିନ ସଂରକ୍ଷିତ ରହିପାରେ ।

ଏହ ଚେରର ଦୁଇଟି ଉପଯୋଗିତା ପ୍ରସିଦ୍ଧି ଲାଭ କରିଛି; ସେଥିରୁ ଗୋଟିଏ ସାପବିଷର ପ୍ରତିକାର ପାଇଁ ଏବଂ ଅନ୍ୟଟି ଉଚ୍ଚରକ୍ତଚାପ (high blood pressure)ର ନିରାକରଣ ପାଇଁ । ୪ ଗ୍ରାମ ମୂଳ ସହିତ ୨୧ଟି ଗୋଲମରିଚ ପାଣିରେ ବାଟି ସାପ କାମୁଡ଼ିଥିବା ଲୋକକୁ ପ୍ରତି ଅଧଘଣ୍ଟାରେ ଥରେ ପିଆଇଲେ ବିଷବିକାର ନଷ୍ଟ ହୋଇଯାଏ ବୋଲି କୁହାଯାଏ ।[୬] ଅପର ପକ୍ଷରେ ଉଚ୍ଚ-ରକ୍ତଚାପ ରୋଗୀଙ୍କ ପାଇଁ ପ୍ରତିଦିନ

୬. ତେବେ ଗର୍ଭବତୀ ମହିଳାଙ୍କୁ ଏହା ଦିଆଯାଏ ନାହିଁ । ଶିଶୁଙ୍କ ପାଇଁ ମଧ ମାତ୍ରା କମ୍ କରିବାକୁ ହୋଇପାରେ । ସ୍ମରଣ ଯୋଗ୍ୟ ଯେ କେବଳ ଗର୍ଭବତୀ ବା ଶିଶୁ ନୁହେଁ, ଅନ୍ୟମାନଙ୍କ ପାଇଁ ମଧ ଔଷଧ ସେବନର ନାନା ପ୍ରକାର ବିଧିନିଷେଧ ରହିଛି । ଗୋଟିଏ ଔଷଧ ବା ମାତ୍ରା ସମାନ ରୋଗରେ ଆକ୍ରାନ୍ତ ଦୁଇ ଜଣ ରୋଗୀଙ୍କ ପାଇଁ ମଧ ଭିନ୍ନ ଭିନ୍ନ ହୋଇପାରେ । କେବଳ ରୋଗ ନୁହେଁ, ରୋଗୀର ଅନ୍ୟାନ୍ୟ କେତେକ ଲକ୍ଷଣ ଦେଖି ମଧ ଔଷଧ ସ୍ଥିର କରାଯାଏ । ତେଣୁ ଏ ବହିଟିରେ ଦିଆଯାଇଥିବା ପ୍ରୟୋଗମାନ ଅଭିଜ୍ଞ ବୈଦ୍ୟଙ୍କ ପରାମର୍ଶ କ୍ରମେ ଉପଯୋଗ କରିବା ଉଚିତ ହେବ ।

୨ ଗ୍ରାମ ଚେର ସହିତ ୨୧ଟି ଗୋଲମରିଚ ବାଟି ଦିନକୁ ଥରେ ଖାଇବା ପାଇଁ କୁହାଯାଇଛି । ଏହାଛଡ଼ା ଅନ୍ୟାନ୍ୟ ରୋଗରେ ମଧ ଏହା କାମ ଦେଇଥାଏ (ଯଥା : ବାତ, ଶୂଳ, ଅର୍ଶ ଏବଂ ଉନ୍ମାଦ ଭଳି ମାନସିକ ରୋଗ ଭୋଗୁଥିବା ବ୍ୟକ୍ତି ପ୍ରତିଦିନ ୨ ବା ୩ ଗ୍ରାମ ମୂଳର ଚୂର୍ଣ୍ଣକୁ ଉଷୁମ ପାଣି ସହିତ ଖାଇଲେ ଉପକାର ହୁଏ) । କିନ୍ତୁ ଶ୍ୱାସ, ଶ୍ୱସନୀ ପ୍ରଦାହ (bronchitis) ଏବଂ ପାକସ୍ଥଳୀରେ ଘା' ଥିବା ଲୋକଙ୍କୁ ପାତାଳଗରୁଡ଼ ଔଷଧ ଦିଆଯିବା ଅନୁଚିତ (ପଟ୍ଟନାୟକ ଓ ଭାଲେଣ୍ଟିନା : ୧୯୯୯; ପଟ୍ଟନାୟକ : ୧୯୯୯) ।

ପାତାଳ ଗରୁଡ଼ ଚେରରେ ଥିବା କେତେକ ଉପକ୍ଷାର (alkaloid) ଏହାର ବିଶେଷତ୍ୱ ପାଇଁ ଦାୟୀ[୬] । ଏଇ ଉପକ୍ଷାରଗୁଡ଼ିକ ଚେରର ଛାଲିରେ ହିଁ ମୁଖ୍ୟତଃ ଠୁଳ ହୋଇଥାଏ, ତେଣୁ ଚେର ଧୋଇବା ବେଳେ ଛାଲି ଯେପରି ଆଦୌ ନଷ୍ଟ ନହୁଏ, ସେଥିପାଇଁ ସତର୍କ ରହିବା ଉଚିତ ।

ପୂର୍ବରୁ କୁହାଯାଇଛି ଯେ ଆମ ପରମ୍ପରାରେ ବନୌଷଧିର ସଂଗ୍ରହ ସଂପର୍କରେ କେତେକ ବିଧିନିଷେଧ ଥିଲା ଯାହା ପଛରେ ବୈଜ୍ଞାନିକ ଦୃଷ୍ଟି ରହିଥିଲା । ଆଧୁନିକ ଗବେଷଣା ମଧ ପାତାଳଗରୁଡ଼ କ୍ଷେତ୍ରରେ ତା'ର ପ୍ରମାଣ ଦେଖିବାକୁ ପାଇଛି । ଜଣାଯାଇଛି ଯେ ପାତାଳଗରୁଡ଼ ଚେରର ଉପକ୍ଷାର ପରିମାଣ ସବୁବେଳେ ସମାନ ନଥାଏ । ଯେଉଁ ସମୟରେ ଗଛ ପତ୍ରଝଡ଼ା ଦିଏ (ଅର୍ଥାତ୍ ପ୍ରାୟ ଶୀତଋତୁରେ), ଠିକ୍ ସେଇ ସମୟରେ ହିଁ ଏହାର ପରିମାଣ ସର୍ବାଧିକ ରହେ ଏବଂ ନୂଆ କଅଁଳିବା ସମୟରେ ଖୁବ୍ କମିଯାଏ ।

ଅତି ଚିକିଟା କିମ୍ବା ଅତି ବାଲିଆ ମାଟିରେ ଭଲ ଚେର ହୁଏ ନାହିଁ ଏବଂ ମାଟିରେ ବାଲି ଅଂଶ ଅଧିକ ଥିଲେ ଚେର ଓ ଗଛର ବିକାଶ ବାଧାପ୍ରାପ୍ତ ହୋଇଥାଏ । କଠିନ ଦୋରସା ମାଟି କିମ୍ବା ଲାଲ ମୋରମ ମିଶା ମାଟିରେ ହିଁ ଚେର ଭଲ ବଢ଼ିଥାଏ ଓ ମୋଟା ହୋଇଥାଏ ।

ଗାଈଆ ଓ ମଇଁଷିଆ ଭେଦରେ ପାତାଳଗରୁଡ଼ ଦୁଇ ପ୍ରକାର । ମଇଁଷିଆ - ଯାହାର ଫୁଲ ଲାଲ ଧଳା ମିଶା- ହିଁ ପ୍ରକୃତ ପାତାଳଗରୁଡ଼ (R. serpentina) ଏବଂ ଗାଈଆ (ଯାହାର ଫୁଲ କେବଳ ଧଳା ଥାଏ) ବୋଲି ଯାହାକୁ କୁହାଯାଏ, ତା'ର ବୈଜ୍ଞାନିକ ନାମ Rauvolfia tetraphyla ଏବଂ କେତେକ ଗୁଣ 'ମଇଁଷିଆ' ପାତାଳଗରୁଡ଼ ତୁଳନାରେ କମ୍ ବୋଲି ଜଣାଯାଇଛି ।[୬(କ)]

କେତେଜଣ ଅଭିଜ୍ଞ ବୈଦ୍ୟ ମତ ଦିଅନ୍ତି ଯେ ବହୁ ବର୍ଷର ପାତାଳଗରୁଡ଼ ଗଛରେ ଚେରର ଶେଷ ଭାଗଟି ଆଳୁ ପରି ମୋଟା ଦେଖାଯାଏ, ତା'କୁ 'ଗରଳ' କୁହନ୍ତି । ଏହି 'ଗରଳ' ପ୍ରାୟ ମାଟିର ଆଠ-ଦଶ ଫୁଟ ତଳେ ଦେଖାଯାଏ ଏବଂ ସାଧାରଣ ପାତାଳଗରୁଡ଼ ଚେର ଅପେକ୍ଷା ବହୁଗୁଣ ଅଧିକ ଫଳପ୍ରଦ ହୋଇଥାଏ ।

---

୬. ପତ୍ର ଓ କାଣ୍ଡରେ ଏହାର ପରିମାଣ କମ୍ ଥାଏ ।

୬(କ). ଦକ୍ଷିଣ ଆମେରିକାର ଆଦିମ ଅଧିବାସୀ ମୟମାନେ R. tetraphylaକୁ ଅତି ବିଷାକ୍ତ ସାପକାମୁଡ଼ାର ସଫଳ ପ୍ରତିକାର ରୂପେ ଉପଯୋଗ କରୁଥିଲେ । ପାତାଳଗରୁଡ଼ ତୁଳନାରେ ଏ ଗଛର ପତ୍ର ସାମାନ୍ୟ ଛୋଟ ଏବଂ ପ୍ରତି ଗଣ୍ଠି ବା ପବସନ୍ଧିରୁ ଏକତ୍ର ଚାରିଟି ପତ୍ର ବାହାରିବାର ଦେଖାଯାଏ । ଏହା ବିଦେଶରୁ ଆସି ଏ ଦେଶରେ ବିସ୍ତାରଲାଭ କରିଛି ବୋଲି ଜଙ୍ଗଲରେ କ୍ୱଚିତ ଦେଖାଯାଏ ।

## ୩. ଅଶ୍ୱଗନ୍ଧା (Withania somnifera) :

ଅଶ୍ୱଗନ୍ଧା ଏପରି ଗୋଟିଏ ବନୌଷଧି ଯାହାର ଚାହିଦା ଅନେକ, ଅଥଚ ଚାଷ ଅପେକ୍ଷାକୃତ ସହଜ । ଏହା ଗୋଟିଏ ଛୋଟ ଗୁଳ୍ମ ଯାହାର ଫଳରେ ସବୁଜ ତଥା ହଳଦିଆ ରଙ୍ଗର ଆଭାସ ଥାଏ । ଏହାର ସର୍ବାଙ୍ଗ ଉପଯୋଗ କରାଯାଉଥିବା କଥା ଶୁଣାଯାଉଥିଲେ ମଧ ମୁଖ୍ୟତଃ ଚେର ହିଁ ଔଷଧ ପାଇଁ ବ୍ୟବହୃତ ହୁଏ ଯାହାର ବଜାର ଦର ପ୍ରାୟ ୧୨୦ଟଙ୍କା (ପ୍ରତି କେଜି) ।[୮]

ଓଡ଼ିଶାର ଜଙ୍ଗଲଗୁଡ଼ିକରୁ ଅଶ୍ୱଗନ୍ଧା ମିଳିବା କ୍ୱଚିତ ଶୁଣାଯାଉଛି । କେହି କେହି ଯେଉଁ ଗଛକୁ ଅଶ୍ୱଗନ୍ଧା ଭାବରେ ବ୍ୟବହାର କରୁଛନ୍ତି, ତାହା ପ୍ରକୃତ ଅଶ୍ୱଗନ୍ଧା କି ନୁହେଁ, ସେ ବିଷୟରେ ସନ୍ଦେହ ରହିଛି । ପ୍ରକୃତ ଅଶ୍ୱଗନ୍ଧାର ପତ୍ର, କାଣ୍ଡ ଓ ଡାଳ ଲୋମ ଦ୍ୱାରା ଆବୃତ ଥାଏ ଏବଂ ଗଛର ଉଚ୍ଚତା ପ୍ରାୟ ୧.୫ ମିଟର ପର୍ଯ୍ୟନ୍ତ ହୁଏ । ଗଛଟି ବାଇଗଣ ଗଛ ପରି ଦେଖାଯାଏ ଏବଂ ଏହାର ମଞ୍ଜି ଲାଲ ରଙ୍ଗର ହୋଇଥାଏ ।

ଶାସ୍ତ୍ରମତରେ ଅଶ୍ୱଗନ୍ଧା ମୂଳ ଶ୍ୱାସ, କ୍ଷୟ, ବାତ, ବନ୍ଧ୍ୟାଦୋଷ, ଅନିଦ୍ରା, ଶିଶୁ-ଦୌର୍ବଲ୍ୟ ଆଦି ରୋଗରେ ଉପକାରୀ । ମୂଳକୁ ଶୁଖାଇ କୁଟିଲେ ମଇଦା ପରି ଗୁଣ୍ଡ ବାହାରେ (ନିରସ ମୃତ୍ତିକାରେ ଜନ୍ମିଥିବା ଗଛର ମୂଳକୁ କୁଟିବା ପରେ ଗୋଟିଏ ଶିର ମଧ ବାହାରେ ଯାହା କାମରେ ଲାଗେ ନାହିଁ) ଯାହାକୁ ଅଶ୍ୱଗନ୍ଧା ଚୂର୍ଣ୍ଣ ବୋଲି କୁହନ୍ତି । ଏହା ଅତ୍ୟନ୍ତ ପୁଷ୍ଟିକର ତଥା ବଳକାରକ ବୋଲି ବିଶ୍ୱାସ ରହିଛି । ମୂତ୍ରାଶୟ (କିଡ଼ନୀ) ପାଇଁ ତଥା ଅନ୍ୟ ଅନେକ ରୋଗରେ ମଧ ଏହା ଉପକାରୀ[୮(କ)], ଏପରିକି ପ୍ଲେଗ ରୋଗର ଉପଶମକାରୀ ମଲମ ତିଆରି ପାଇଁ ମଧ ବ୍ୟବହୃତ ହୋଇଛି (ବିମଳା ଦେବୀ ଓ କ୍ରିଷ୍ଣା ରାଓ : ୧୯୮୯)।

ଅଶ୍ୱଗନ୍ଧା ଚୂର୍ଣ୍ଣର ଗନ୍ଧ ତୀବ୍ର ଏବଂ ସ୍ୱାଦୁ ଅମ୍ଳଯୁକ୍ତ । ମୂଳ ମଧ ତୀବ୍ରଗନ୍ଧଯୁକ୍ତ ଏବଂ ଚୋବାଇଲେ ତିକ୍ତ (ପିତା) ତଥା ଉଗ୍ର ବୋଧ ହୋଇଥାଏ । ପତ୍ର ମଧ ଉପକାରୀ ଏବଂ ସିଝା ପତ୍ରରୁ ତିଆରି ମଲମ ଶଯ୍ୟାକ୍ଷତ (bed-sore) ତଥା ଅନ୍ୟାନ୍ୟ ଘା' ପାଇଁ ଉପକାରୀ (ବିମଳା ଦେବୀ ଓ କ୍ରିଷ୍ଣା ରାଓ ୧୯୮୯)।

---

୮. କେତେକ ସୂଚନା ଅନୁଯାୟୀ ଅଶ୍ୱଗନ୍ଧା ଚୂର୍ଣ୍ଣର ଦର ±୧୦୦ ଟଙ୍କା ଥିବା ବେଳେ ଚେରର ଦର ±୩୦ ଟଙ୍କା ହୋଇଥାଏ । କିନ୍ତୁ ଓଡ଼ିଶାରେ ଅଶ୍ୱଗନ୍ଧା ଚେର ହିଁ କେଜି ପ୍ରତି ୧୦୦ ଟଙ୍କାରୁ ଅଧିକ ମୂଲ୍ୟରେ ବିକ୍ରି ହେଉଥିବାର ତଥ୍ୟ ଆମେ ପାଇଛୁ । ଯାହା ଜଣାଯାଇଛି, ଆୟୁର୍ବେଦୀୟ ଔଷଧ ପ୍ରସ୍ତୁତିରେ ବ୍ୟବହୃତ ଅଶ୍ୱଗନ୍ଧାର ଦର ଅଧିକ ରହେ ଏବଂ ରସାୟନ ନିଷ୍କାସନକାରୀମାନେ (chemical extractors) - ଯେଉଁମାନେ ତନ୍ତୁବହୁଳ ଅଶ୍ୱଗନ୍ଧାକୁ ନିକୃଷ୍ଟ ମନେକରନ୍ତି ନାହିଁ - ହିଁ ସାଧାରଣତଃ ଚାଷୀକୁ କମ୍ ଦର ଦେଇଥାନ୍ତି । ରାଜସ୍ଥାନରେ ଅମଳ ପୂର୍ବରୁ ହିଁ କେଜି ପ୍ରତି ପ୍ରାୟ ୪୦ ଟଙ୍କା ଦରରେ ଚୁକ୍ତି ହୋଇ ବ୍ୟବସାୟୀମାନେ ଚାଷୀକୁ ଅଗ୍ରୀମ ଦେଇଥିବାର ସମ୍ବାଦ ମଧ ମିଳିଛି ।

୮(କ). ଚୂର୍ଣ୍ଣ ସେବନ ବିଧିର କେତେକ ଉଦାହରଣ :

- କଞ୍ଚା ଗାଈ କ୍ଷୀରରେ ଗୋଳାଇ ପ୍ରତିଦିନ ଖାଇଲେ କୁମାରୀମାନଙ୍କର ଶରୀର ପୁଷ୍ଟ ହୁଏ ଏବଂ ଅନ୍ୟାନ୍ୟ ଉପକାର (ସ୍ତ୍ରୀରୋଗ ଜନିତ) ମିଳେ । (ଶତପଥୀ : ପ୍ରକାଶକାଳ ଅଜ୍ଞାତ)
- ସିଝା ଗାଈ କ୍ଷୀର ସହିତ ଗୋଳାଇ ପ୍ରତିଦିନ ଭୋଜନ ପରେ ଖାଇଲେ ଶରୀର ବଳିଷ୍ଠ ହୁଏ । (ଶତପଥୀ : ପ୍ରକାଶକାଳ ଅଜ୍ଞାତ)
- ଘିଅ ବା ତେଲରେ ଗୋଳାଇ ଘା'ରେ ଲଗାଇଲେ ଘା' ଶୁଖିଯାଏ ଏବଂ ଫୁଲାରେ ମାଲିସ୍ କଲେ ଫୁଲା କମିଯାଏ । (ପଟ୍ଟନାୟକ : ୧୯୯୯)

ଯେଉଁ ଜମି ପାଣି ତଥା ଉର୍ବରତା ଅଭାବରୁ ଅନ୍ୟ ଫସଲ ପାଇଁ ଉପଯୁକ୍ତ ହୋଇପାରିନଥାଏ, ସେଭଳି ଜମି ମଧ୍ୟ ଅଶ୍ୱଗନ୍ଧା ଚାଷ ପାଇଁ ଉପଯୁକ୍ତ ହୋଇପାରେ । ସେଥିପାଇଁ ମରୁଡ଼ି-ପ୍ରବଣ ଅଞ୍ଚଳରେ ମଧ୍ୟ ଏହାର ଚାଷ କରାଯାଇପାରେ । ତେବେ, ଏହାର ଉପଯୁକ୍ତ ଚାଷ ପଦ୍ଧତି ସଂପର୍କରେ ମତଭେଦ ରହିଛି । ଗୋଟିଏ ପଦ୍ଧତି ଅନୁଯାୟୀ, ଜୁଲାଇ ମାସରେ ମଞ୍ଜି ବୁଣି ଚାରା ପ୍ରସ୍ତୁତ କରିନେବାର ପ୍ରାୟ ୫ରୁ ୮ ସପ୍ତାହ ପରେ ପରସ୍ପର ଠାରୁ ଅଳ୍ପ ବ୍ୟବଧାନ ଥିବା ଧାଡ଼ିରେ ପ୍ରାୟ ୩୦ ସେ.ମି. ଦୂରତା ରଖି ଚାରାଗୁଡ଼ିକୁ ଲଗାଇ ଦିଆଯାଏ । ପାଞ୍ଚ କେଜି ମଞ୍ଜି ଏକ ହେକ୍ଟର ଜମି ପାଇଁ ପର୍ଯ୍ୟାପ୍ତ ଚାରା ଯୋଗାଇପାରେ । କିନ୍ତୁ ଏହି ପ୍ରତିରୋପଣ ପଦ୍ଧତିରେ ବଢୁଥିବା ଗଛର ଚେରରେ ତନ୍ତୁ ବା ସୂତା ପରି ଅଂଶ ବୃଦ୍ଧି ପାଇ ମଣ୍ଡଦ (starch)ର ପରିମାଣ ଯଥେଷ୍ଟ କମିଯିବାର ଆଶଙ୍କା ଥାଏ ଏବଂ ସେପରି ଘଟିଲେ ଚେରରୁ ମିଳୁଥିବା ଚୂର୍ଣ୍ଣର ପରିମାଣ ମଧ୍ୟ କମିଯାଏ । ତେଣୁ ଏଭଳି ଚେର ଔଷଧୀୟ ବ୍ୟବହାର ପାଇଁ ଉତ୍କୃଷ୍ଟ ବିବେଚିତ ହୋଇପାରେ ନାହିଁ ।

ଅଗଷ୍ଟ ୨ୟ ବା ୩ୟ ସପ୍ତାହ ବେଳକୁ ପରସ୍ପର ଠାରୁ ୨୫ ସେ.ମି. ଦୂରତାରେ ମଞ୍ଜି ପୋତି (ଧାଡ଼ିରେ) ଗଛ ବଢ଼ାଇବା ଅନ୍ୟ ଏକ ପଦ୍ଧତି ଯାହା ଭଲ ଫଳ ଦେଇଥାଏ, କିନ୍ତୁ ଅପେକ୍ଷାକୃତ କଷ୍ଟସାଧ୍ୟ ମନେହୋଇଥାଏ । ସହଜତମ ପଦ୍ଧତି ହେଉଛି, ମଞ୍ଜିକୁ ଦୁଇ ଦିନ ପାଣିରେ ଭିଜାଇ ଅଳ୍ପ ଶୁଖାଇବା ପରେ ସମାନ ପରିମାଣର ବାଲି ସହିତ ମିଶାଇ ପୂର୍ବପ୍ରସ୍ତୁତ (ହଳ କରାଯାଇ ଖତ ଆଦି ଦିଆଯାଇଥିବ ଏବଂ ମାଟିରେ ଯଥେଷ୍ଟ ଜଳୀୟ ଅଂଶ ଥିବ) ଜମିରେ ବୁଣି ଦେଲେ ୧୦ରୁ ୩୦ ଦିନ ଭିତରେ ମଞ୍ଜିଗୁଡ଼ିକ ଗଜା ହୋଇଯାଏ । ହେକ୍ଟର ପ୍ରତି ୧୦/୧୨ କେଜି ମଞ୍ଜି ଦରକାର ହୋଇଥାଏ ଏବଂ ସେଥିରୁ ୬୦-୬୫% ଗଜା ହୋଇଥାଏ । ବୁଣିବାର ପ୍ରାୟ ୨୦/୨୫ ଦିନ ପରେ ଗଛଗୁଡ଼ିକ ୩/୪ ପତ୍ରବିଶିଷ୍ଟ ହୋଇଥିବା ସମୟରେ ପାତଳୀକରଣ (thinning) କରିବାକୁ ହୁଏ ଯେପରିକି ଗଛଗୁଡ଼ିକର ପାରସ୍ପରିକ ଦୂରତା ପ୍ରାୟ ୧୦ ସେ.ମି. ରହିବ । ମଝିରେ ମଝିରେ ଅଗଛା ବାଛିବାକୁ ହୁଏ । ଏ ଦୁଇ ପଦ୍ଧତିରେ ପ୍ରତିରୋପଣର ସ୍ଥାନ ନ ଥାଏ ।

ଏହି ଚାଷ ଖର୍ଚ୍ଚବହୁଳ ନୁହେଁ ଏବଂ ମିଳିଥିବା ତଥ୍ୟ ଅନୁଯାୟୀ ରାଜସ୍ଥାନର କେତେକ ଚାଷୀ ଅଶ୍ୱଗନ୍ଧା ଚାଷ କରି ବିଶେଷ କୌଣସି ଚେଷ୍ଟା ବିନା ଏକର ପ୍ରତି ପ୍ରାୟ ୨୫ ହଜାର ଟଙ୍କା ବାସ୍ତବ ଲାଭ ପାଇଛନ୍ତି (୨୦୦୧) । ଏଥିରେ ଖତ ଓ ପାଣି କମ୍ ଦରକାର ହୋଇଥାଏ ଏବଂ ପାଣି ଜମି ରହିଲେ ଗଛର କ୍ଷତି ଘଟିଥାଏ । ଯବକ୍ଷାରଜାନଯୁକ୍ତ ରାସାୟନିକ ସାର (Nitrogenous fertilizer) ପ୍ରୟୋଗ କଲେ ବିପରୀତ ଫଳ ହୁଏ, ଅର୍ଥାତ୍ ପତ୍ର ଅଧିକ ହୁଏ କିନ୍ତୁ ମୂଳ ଉତ୍ପାଦନ କମିଯାଏ ।

ଗଛକୁ ସଂପୂର୍ଣ୍ଣ ଉପାଡ଼ି ଆଣି ମୂଳଗୁଡ଼ିକ କାଟି ନିଆଯାଏ ଏବଂ ସଫାକରି ଛୋଟ ଛୋଟ ଖଣ୍ଡ କରିବା ପରେ ଶୁଖାଇ ଦିଆଯାଏ[୯] । ଅତି ସରୁ ଚେର ଔଷଧ ପାଇଁ କାମ ଦିଏ ନାହିଁ ଏବଂ ଏକରୁ ଦୁଇ ସେ.ମି. ବ୍ୟାସ ବିଶିଷ୍ଟ ଚେରର ଅଧିକ ଚାହିଦା ରହେ । ହେକ୍ଟର ପ୍ରତି ଅନ୍ତତଃ ପ୍ରାୟ ୪ କ୍ୱିଣ୍ଟାଲ ଶୁଖିଲା ଚେର ତଥା ପ୍ରାୟ ୫୦ କେଜି ମଞ୍ଜି (କେଜି ପ୍ରତି ଦର ପ୍ରାୟ ୫୦ ଟଙ୍କା) ଅମଳ ହେବାର ଆଶା ଥାଏ ।

ଅଶ୍ୱଗନ୍ଧା ଗଛରେ ଡିସେମ୍ବର ମାସରେ ଫୁଲ ଓ ଫଳ ଧରିଥାଏ । ଜାନୁଆରୀରୁ ମାର୍ଚ୍ଚ ମାସ ଭିତରେ (ପତ୍ର ହଳଦିଆ ପଡ଼ିଆସିଥାଏ ଓ ଫଳ ପାକଳ ହୋଇଯାଇଥାଏ) ଚେର ଅମଳ କରାଯାଇଥାଏ ଏବଂ କେହି କେହି (ବୈଦ୍ୟ) ମତ ଦିଅନ୍ତି ଯେ ବସନ୍ତ ଋତୁରେ ସଂଗୃହୀତ ଅଶ୍ୱଗନ୍ଧା ଚେର ବିଶେଷ ବଳକାରକ ହୋଇଥାଏ ।

## ୪. ତ୍ରିଫଳା (ହରିଡ଼ା, ବାହାଡ଼ା, ଅଁଳା) :

ହରିଡ଼ା ଏ ଗଛ (Terminalia chebula) ପ୍ରବଳ ଆଲୋକାଶାୟୀ (strong light demander), ତେଣୁ ଛାଇରେ ଭଲ ବଢ଼େ ନାହିଁ ଯଦିଓ ଗଜା/ଚାରା ଅବସ୍ଥାରେ କିଛିଟା ଛାଇ ଦରକାର ହୋଇଥାଏ । ଏ ଗଛ ତୁଷାରପାତ ଓ ମରୁଡ଼ି ସହିପାରେ ଏବଂ ନିଆଁରେ ପୋଡ଼ିଗଲେ ମଧ୍ୟ ପୁଣି କଅଁଳି ଉଠେ । ହରିଡ଼ା ଗଛରୁ ଭଲ ଗଜା ବାହାରିବାର ମଧ୍ୟ ଦେଖାଯାଏ ।

ହରିଡ଼ା ମଞ୍ଜିର ଅଙ୍କୁରୋଦ୍‌ଗମ୍ ଶକ୍ତି ଦୁର୍ବଳ । ତେଣୁ ଫେବୃଆରୀ-ମାର୍ଚ୍ଚରେ ଗଛରୁ ପଡ଼ିଥିବା ଫଳକୁ ତୁରନ୍ତ ସଂଗ୍ରହ କରି ପାକଳ ମଞ୍ଜିଗୁଡ଼ିକୁ ବାହାର କରି ନିଆଯାଏ ଏବଂ ଖରାରେ ଶୁଖାଯାଏ । ଶୁଖିଲା ମଞ୍ଜିଗୁଡ଼ିକୁ ୨ ଦିନ ଥଣ୍ଡା ପାଣିରେ ଭିଜାଇବା ପରେ ଓଦା କନା/ଅଖାରେ ବାନ୍ଧି କଞ୍ଚା ଗୋବରର ଗନ୍ଧ ବା ଗ୍ୟାସ ବାଜିବା ଭଳି ସ୍ଥାନରେ ୧୫ ଦିନ ରଖାଯାଏ[୧୦] । ତା' ପରେ ମଞ୍ଜିକୁ କାଢ଼ି ଓଦାବସ୍ତା ଉପରେ ବିଛାଇ ଅନ୍ୟ ଏକ ଓଦା ଅଖା ଦ୍ୱାରା ଘୋଡ଼ାଇ ଦେବାକୁ ହୁଏ ଏବଂ ସେଥିରେ ପ୍ରତିଦିନ ପାଣି ଛିଞ୍ଚାଯାଏ । ଗଜା ବାହାରିବା ପରେ ପୂର୍ବ-ପ୍ରସ୍ତୁତ ପଲିଥିନ୍‌ରେ ପୋତି ନିୟମିତ ପାଣି ଦିଆଯାଏ ଏବଂ ଛାଇର ବନ୍ଦୋବସ୍ତ କରିବାକୁ ହୁଏ । ବର୍ଷାଋତୁରେ ଚାରା ଗୁଡ଼ିକୁ ପୋତି ଦିଆଯାଇଥାଏ ।

ଗଜା ନକରି ଶୁଖିଲା ମଞ୍ଜିକୁ ସିଧାସଳଖ ଚାରା ପାଇଁ ପୋତିଲେ ମାଟି ଘୋଡ଼ାଇ ଦେବାକୁ ହୁଏ ।

---

୯. ସେପରି ନକରିବା ସ୍ଥିତିରେ ସମୁଦାୟ ଚେରକୁ ଗୋଟା ଶୁଖାଇବା ପରେ ବାଡ଼ି ସାହାଯ୍ୟରେ ପିଟି ପିଟି ମାଟି ଏବଂ ସରୁ ପାର୍ଶ୍ୱମୂଳ(lateral roots)ମାନ ଝାଡ଼ି/ଅଲଗା କରିଦିଆଯାଏ ।

୧୦. ହରିଡ଼ା ମଞ୍ଜିରେ କେବଳ ଯେ ସହଜରେ ପୋକ ଲାଗନ୍ତି, ସେତିକି ନୁହେଁ; ମୂଷା, ଗୁଣ୍ଡୁଚି ଇତ୍ୟାଦି ମଧ୍ୟ ଏହାକୁ ଖାଇଥାନ୍ତି ।

ବାହାଡ଼ା (Terminalia bellirica) : ଏ ଗଛଟି ମଧ ଯଥେଷ୍ଟ ଆଲୋକ ଆବଶ୍ୟକ କରେ । ଆର୍ଦ୍ର ଅଞ୍ଚଳରେ ଦେଖାଯାଉଥିଲେ ବି ମରୁଡ଼ିରେ ତିଷ୍ଠି ପାରିବା କ୍ଷମତା ଏହାର ଯଥେଷ୍ଟ ରହିଛି । ହରିଡ଼ା ପରି ବାହାଡ଼ା ଗଛରୁ ମଧ ଭଲ ଗଜା ବାହାରିଥାଏ ।

ଫେବୃଆରୀ-ମାର୍ଚ୍ଚରେ ଗଛର ସଦ୍ୟ ପଡ଼ିଥିବା ଫଳକୁ ତୁରନ୍ତ ସଂଗ୍ରହ କରି ମଞ୍ଜି ବାହାର କରିନିଆଯାଏ ଓ ଖରାରେ ଶୁଖାଇ ଦିଆଯାଏ । ୨ ଦିନ ଭିଜିଥିବା ମଞ୍ଜିକୁ ଅଖା ବା କନା ଦ୍ୱାରା ବାନ୍ଧି କଞ୍ଚା ଗୋବରରେ ପୋତାଯାଏ ଏବଂ ୨ ଦିନ ପରେ ବାହାର କରି ପଟାଳିରେ ପୁଣି ପୋତି ଦିଆଯାଏ । ଗଜା ବାହାରିବା ପରେ ସାବଧାନତାର ସହ ମଞ୍ଜିକୁ କାଢ଼ି ପୂର୍ବ-ପ୍ରସ୍ତୁତ ପଲିଥିନକୁ ନେଇ ଚାରା କରାଯାଏ । ଚାରାକୁ ଅଧିକ ଖରାରୁ ରକ୍ଷା କରିବାର ବ୍ୟବସ୍ଥା ମଧ କରିବାକୁ ପଡ଼ିଥାଏ । ୨ରୁ ୪ ମାସର ଚାରା ସ୍ଥାୟୀ ପ୍ରତିରୋପଣ ପାଇଁ ପ୍ରସ୍ତୁତ ହୋଇଯାଇଥିଲେ ମଧ ବର୍ଷକର ଚାରା ଲଗାଇବା ପାଇଁ କେହି କେହି ପରାମର୍ଶ ଦେଇଥା'ନ୍ତି ।

ଅଁଳା (Emblica officinalis) : ଅଁଳା ଗଛ ଶୁଷ୍କ, ଅନୁର୍ବର ମାଟିରେ ଭଲ ବଢ଼ିଥାଏ । ଏହା ମରୁଡ଼ି ତଥା ତୁଷାରପାତ ସହିପାରେ, କିନ୍ତୁ ଛାଇରେ ବିଶେଷ ବଢ଼ିପାରେ ନାହିଁ ।

ଫେବୃଆରୀ-ମାର୍ଚ୍ଚରେ ପାକଳ ହୋଇ କଳା ପଡ଼ିଯାଇଥିବା ଫଳକୁ ସଂଗ୍ରହ କରି ମଞ୍ଜି ବାହାର କରାଯାଏ ଓ କମ୍ ଖରାରେ ଶୁଖାଯାଏ । ୧୨ ଘଣ୍ଟା ଭିଜିଥିବା ମଞ୍ଜିକୁ ପୂର୍ବ-ପ୍ରସ୍ତୁତ ପଲିଥିନ୍‌ରେ ୨/୩ଟି ଲେଖାଏଁ ପୋତି ପାଣି ଦିଆଯାଏ । ଚାରା ହେବା ପରେ ଦିନକୁ ୨ ଥର ପାଣି ଦେବାକୁ ହୁଏ ।

ଅଁଳା ଗଛକୁ ପବିତ୍ର ମନେ କରାଯାଉଥିବାରୁ କେହି କେହି ଘରବାଡ଼ିରେ ଏ ଗଛ ଲଗାଇଥା'ନ୍ତି । ଏଥିରୁ ଖଣ୍ଡିଏ ଡାଳ କାଟିନେଲେ ନୂଆ ଡାଳ ଶୀଘ୍ର କଅଁଳି ଉଠେ ।

ଏ ତିନି ଗଛର ଫଳକୁ (ଏକତ୍ର) ତ୍ରିଫଳା ବୋଲି କୁହନ୍ତି । ପୃଥକ୍ ପୃଥକ୍ ବ୍ୟବହାର କରାଗଲେ ହରିଡ଼ା, ବାହାଡ଼ା ଓ ଅଁଳା ବିଭିନ୍ନ ରୋଗରେ ଉପକାର ତ କରିଥାନ୍ତି; କିନ୍ତୁ ଏକାଠି କରି ତ୍ରିଫଳା ରୂପେ ପ୍ରୟୋଗ କଲେ ସେଗୁଡ଼ିକର କେତେକ ବିଶେଷ ପ୍ରଭାବ ଜନ୍ମିଥାଏ ବୋଲି ବୈଜ୍ଞାନିକ ପରୀକ୍ଷଣରୁ ମଧ ଜଣାଯାଇଛି ।

ହରିଡ଼ା, ବାହାଡ଼ା ଓ ଅଁଳାର କେତେକ ନିର୍ବାଚିତ ଉପଯୋଗିତା ଏଠାରେ ଦିଆଯାଉଛି :

- ପୁରୁଣା ଗୁଡ଼ରେ ମିଶିଥିବା ହରିଡ଼ା ଚୂର୍ଣ୍ଣରୁ ଅଧତୋଳା ନେଇ ଏକ ଛଟାଙ୍କି (ପ୍ରାୟ ୬୦ ଗ୍ରାମ) ଗୋମୂତ୍ର ସହ ସେବନ କଲେ ବହୁକାଳର ଗୋଦର ଓ କୁଷ୍ଠ ଆରୋଗ୍ୟ ହୋଇଥାଏ । (ଦାଶ ୨୦୦୧)
- ହରିଡ଼ାକୁ ଘୋରି ଲଗାଇଲେ ବହୁଦିନରୁ ନ ଶୁଖୁଥିବା ଘା' ଭଲହୁଏ । (ପଟ୍ଟନାୟକ ଓ ଭାଲେଣ୍ଟିନା : ୧୯୯୯)

## ଶ୍ରେଷ୍ଠ ହରିଡ଼ାର ଲକ୍ଷଣ

ଶାସ୍ତ୍ରରେ ସାତ ପ୍ରକାର ହରିଡ଼ାର ଲକ୍ଷଣ ବର୍ଣ୍ଣନା କରାଯାଇଛି; ସେଥିରୁ କେଉଁଟି ମାଂସଳ (ଅମୃତ), କେଉଁଟି ପଞ୍ଚରେଖା ବିଶିଷ୍ଟ (ଅଭୟା), କେଉଁଟି ସୁନେଲି ରଙ୍ଗର (ଜୀବନ୍ତୀ) ଏବଂ କେଉଁଟି ତିନିରେଖା ବିଶିଷ୍ଟ (ଚେତକୀ)। ଅଭୟା ହରିଡ଼ା ଓଡ଼ିଶାର ପର୍ବତାଞ୍ଚଳରେ ବିଶେଷ ଦେଖାଯାଏ ବୋଲି କୁହାଯାଇଛି ଏବଂ ଏହା ଚକ୍ଷୁରୋଗରେ ବିଶେଷ ହିତକର। ବିଜୟା ହରିଡ଼ା ଶ୍ରେଷ୍ଠ ଏବଂ ସର୍ବରୋଗରେ ଉପକାରୀ।

କିନ୍ତୁ କେବଳ ଜାତି ଦ୍ୱାରା ହରିଡ଼ାର ଶ୍ରେଷ୍ଠତା ସ୍ଥିର ହୁଏ ନାହିଁ। ବିଜୟା ହରିଡ଼ାରେ ଯଦି ପୋକ ଲାଗିଥାଏ, ତା'ହେଲେ ତା'ର କି ମୂଲ୍ୟ ?

ତେଣୁ, ଯେଉଁ ହରିଡ଼ା ନୂତନ, ଚିକ୍କଣ, ଗୋଲାକାର ଏବଂ ପାଣିରେ ବୁଡ଼ିଯାଏ, ତାହାହିଁ ବିଶେଷ ଉପଯୋଗୀ ବୋଲି କୁହାଯାଇଛି।

- ଅଶ୍ୱଗନ୍ଧା ଚୂର୍ଣ୍ଣ ଓ ବାହାଡ଼ା ଚୂର୍ଣ୍ଣ-ପ୍ରତ୍ୟେକରୁ ୨ ଗ୍ରାମ୍ ନେଇ ପୁରୁଣା ଗୁଡ଼ ଓ ଗରମ ଜଳ ସହିତ ସେବନ କଲେ ଅସ୍ୱାଭାବିକ ହୃତ୍ସ୍ପନ୍ଦନ ଭଲହୁଏ । (ତ୍ରିପାଠୀ : ୧୯୯୫)

- ଅସମୟରେ ମୁଣ୍ଡବାଳ ପାଚି ଯାଉଥିବା ସ୍ଥିତିରେ ଏକ କେଜି ରାଶି ତେଲ ବା କଡ଼ାତେଲରେ ୨୫/୩୦ ଗ୍ରାମ ବାହାଡ଼ା ଚୂର୍ଣ୍ଣ ୭/୮ ଦିନ ଭିଜାଇ ପରେ ସେ ତେଲକୁ ଛାଣି ଲଗାଇଲେ ଅନେକ ଉପକାର ମିଳେ । (ପଟ୍ଟନାୟକ ଓ ଭାଲେଣ୍ଟିନା : ୧୯୯୯)

- ପରିସ୍ରା ସଂପୂର୍ଣ୍ଣ ବନ୍ଦ ହୋଇଗଲେ ଏକ ଛଟାଙ୍କି ଅଁଳା ସହିତ ଏକ ତୋଳା 'ଯବଖାର' ମିଶାଇ ଥଣ୍ଡା ପାଣିରେ ବାଟି ତଳିପେଟରେ ବହଳ ଲେପ ଦେଲେ ମୂତ୍ରରୋଧ ରୋଗ ଭଲ ହୋଇଥାଏ । (ଦାଶ : ୨୦୦୧)

- ୧ ଗ୍ରାମ ଧନିଆ ଓ ୪/୫ଟି ଅଁଳା ରାତିରେ ଭିଜାଇ ସକାଳେ ସେ ପାଣିକୁ ଛାଣି ଖାଲି ପେଟରେ ପିଇଲେ ପରିସ୍ରାପୋଡ଼ା ଦୂର ହୋଇଥାଏ । (ପଟ୍ଟନାୟକ ଓ ଭାଲେଣ୍ଟିନା : ୧୯୯୯)

ଅନ୍ୟାନ୍ୟ ଉପଯୋଗିତା ମଧ୍ୟରେ ହରିଡ଼ା, ବାହାଡ଼ା ତଥା ଅଁଳାର ଚମଡ଼ା କଷିବା ସାମର୍ଥ୍ୟ ରହିଛି ।[୧୧] ତା'ଛଡ଼ା, ବାହାଡ଼ା ଗଛରେ ଟସର ଚାଷ କରାଯାଇପାରେ ।

ଭଲ କରି ଧୁଆ ଯାଇଥିବା ଛୋଟ ଅଁଳା ଡାଳ ଖଣ୍ଡିଏ ଗୋଳିଆ ପାଣିଥିବା ହାଣ୍ଡିରେ ପକାଇ ଦେଲେ ସକାଳେ ପାଣି ନିର୍ମଳ ହୋଇଯାଏ (ପଟ୍ଟନାୟକ ଓ ଭାଲେଣ୍ଟିନା : ୧୯୯୯)। ସେଥିପାଇଁ ନୂଆ କୂଅର ପ୍ରଥମ ନନ୍ଦ ତଳେ ଅଁଳା କାଠ ଖଞ୍ଜି ଦିଆଯାଉଥିଲା ଯେପରିକି କୂଅପାଣି ନିର୍ମଳ ରହିବ।

ଏତେ ଉପକାରରେ ଆସୁଥିବା ଗଛ ତିନିଟିର ସଂରକ୍ଷଣ ତଥା ଉପଯୋଗ ସଂପର୍କରେ ଅନେକ ବିଧିନିଷେଧ ରହିଛି । ପ୍ରଥମ ବିଧିନିଷେଧଟି ହେଉଛି ତ୍ରିଫଳାର ସଂଗ୍ରହ ବିଷୟରେ । ଶାସ୍ତ୍ରରେ କୁହାଯାଇଛି :

*ମାଘେ ହରିତକୀ ମସ୍ତା, ଫାଲ୍ଗୁନେଚ ବିଭୀତକୀ;*
*ଚୈତ୍ରେ ଚାମଳକୀ ପ୍ରୋକ୍ତା, ତ୍ରିଫଳା ସଫଳା ଭବେତ୍ ।*

ଅର୍ଥାତ୍, ମାଘ (୧୫ ଜାନୁଆରୀ-୧୫ ଫେବୃଆରୀ)ରେ ହରିଡ଼ା, ଫାଲ୍ଗୁନ (୧୫ ଫେବୃଆରୀ-୧୫ ମାର୍ଚ୍ଚ)ରେ ବାହାଡ଼ା ଏବଂ ଚୈତ୍ର (୧୫ ମାର୍ଚ୍ଚ-୧୫ ଏପ୍ରିଲ) ରେ ଅଁଳା ସଂଗ୍ରହ କଲେ ସେଗୁଡ଼ିକର ଉପଯୋଗ ସଫଳ ହୁଏ (ଅର୍ଥାତ୍, ସେହି ସମୟଗୁଡ଼ିକରେ ହିଁ ସେମାନେ ସର୍ବୋତ୍ତମ ଔଷଧୀୟ ଗୁଣ ସଂପନ୍ନ ହୁଅନ୍ତି)।

ତୋଳିବା ସମୟରେ ନିଜ ସୁବିଧା ପାଇଁ ଲୋକେ ହରିଡ଼ାଦି ଗଛର ଡାଳ ଭାଙ୍ଗି/କାଟି ଦେବାର ଅଭ୍ୟାସ ରଖିଥା'ନ୍ତି ଯାହା ଗଛ ପାଇଁ କ୍ଷତିକାରକ । ହାତରେ ବାଛି ବାଛି ଗଛରୁ ତୋଳା ଯାଇଥିବା ତ୍ରିଫଳାର ବିଶେଷ ଆଦର ରହିଛି କାରଣ ସେଥିରୁ ଅଦରକାରୀ ବା ଅନୁପଯୁକ୍ତ ଫଳ କ୍ୱଚିତ/କମ୍ ବାହାରିଥାଏ । ଡାଳ ଭାଙ୍ଗି ତଳେ ପକାଇ ସେଥିରୁ ଫଳଗୁଡ଼ିକ ତୋଳି ନେବା ଲୋକେ ଯାହା ଯୋଗାଇଥା'ନ୍ତି, ସେଥିରେ ବିଭିନ୍ନ ଆକାରପ୍ରକାରର (ଛୋଟ ବଡ଼, କଞ୍ଚା ପାଚିଲା ଇତ୍ୟାଦି) ଫଳ ମିଶି ରହିଥାଏ ।[୧୧(କ)]

---

୧୧. ବାହାଡ଼ା ତୁଳନାରେ ହରିଡ଼ାର ଚମଡ଼ା କଷିବା ସାମର୍ଥ୍ୟ ଅନେକ ବେଶି ଏବଂ ଜାନୁଆରୀରୁ ମାର୍ଚ୍ଚ ମଧ୍ୟରେ ସଂଗୃହୀତ ଫଳ (ହରିଡ଼ା) ଏଥିପାଇଁ ସର୍ବୋତ୍ତମ। ତେବେ କେତେକ ଦୋଷ ରହିଥିବାରୁ ଏହାର ସଂପୂର୍ଣ୍ଣ ଉପଯୋଗ କରାଯାଉନାହିଁ। ଅଁଳା ଫଳର ମାଂସଳ ଅଂଶ ବା ମଞ୍ଜା ଚମଡ଼ା କଷିବା ପାଇଁ ଅତି ଉପଯୋଗୀ ଏବଂ ଏ ଉଦ୍ଦେଶ୍ୟରେ ବ୍ୟବହାର କରିବାକୁ ହେଲେ ପାଚିବାର ଠିକ୍ ପୂର୍ବରୁ ଫଳ ତୋଳିନେବା ଉଚିତ।

୧୧(କ). ହାତ ନ ପହଞ୍ଚୁଥିବା ଡାଳରୁ ଆଙ୍କୁଡ଼ି ସାହାଯ୍ୟରେ ଫଳ ତୋଳିଲେ ସେଗୁଡ଼ିକ ତଳେ ପଡ଼ିଯାଏ। ସେଥିପାଇଁ କେହି କେହି ଆଙ୍କୁଡ଼ିରେ ଗୋଟିଏ ମୁଣି ଭଳି କିଛି ଝୁଲାଇଥା'ନ୍ତି ଯେପରିକି ଫଳ ଖସି ସେଥିରେ ହିଁ ପଡ଼ିବ।

ପାକଳ ତ୍ରିଫଳାକୁ ଭଲ ଭାବରେ ଧୋଇ ଖରାରେ ଶୁଖାଇବା ପରେ ଛେଚି ସେଗୁଡ଼ିକର ମଞ୍ଜି କାଢ଼ି ଦିଆଯାଏ ।[୧୨] ତ୍ରିଫଳାର ମଜ୍ଜା (ମଞ୍ଜିଛଡ଼ା ଶୁଖିଲା ଫଳ) ହିଁ ଔଷଧରେ ଲାଗିଥାଏ । ଏହା ବ୍ୟତୀତ ଛୋଟ କଷି ହରିଡ଼ା-ଯାହାକୁ ଜଙ୍ଗୀ ହରିଡ଼ା ବୋଲି ମଧ କୁହନ୍ତି-ର କେତେକ ବିଶେଷ ଔଷଧୀୟ ଉପଯୋଗିତା ତଥା ଚାହିଦା ରହିଛି ଏବଂ ଏହାକୁ ମଧ ଶୁଖାଇ ବ୍ୟବହାର କରାଯାଇଥାଏ । ପାକଳ ହରିଡ଼ା ହଳଦିଆ ରଙ୍ଗର ହୋଇଥିବା ବେଳେ ଜଙ୍ଗୀ ହରିଡ଼ା ଶୁଖିବା ପରେ କଳା ପଡ଼ିଯାଏ ।

ଅଁଳାର ଏକ ବିଶେଷତ୍ୱ ହେଉଛି ସିଝାଇବା ଅଥବା ଶୁଖାଇବା ଦ୍ୱାରା ମଧ ଏହାର ଖାଦ୍ୟପ୍ରାଣ (ଭିଟାମିନ) ନଷ୍ଟ ହୁଏ ନାହିଁ। ଏଥିରେ ପ୍ରଚୁର ପରିମାଣର ଭିଟାମିନ-ସି ରହିଛି। କଞ୍ଚା ଅଁଳାକୁ ଚୂନ ପାଣିରେ ଭଲ ଭାବେ ଧୋଇ ସେଥିରେ ମହୁ ବା ତେଲ ବୋଳି ରଖିଦେଲେ କିଛି ଦିନ ପର୍ଯ୍ୟନ୍ତ ତା'ର ଗୁଣ ସୁରକ୍ଷିତ ରହେ।

***

୧୨. ଅନ୍ୟ ପଦ୍ଧତିରେ (ଯଥା : ହାତରେ ଛଡ଼ାଇ) ମଧ ମଞ୍ଜି ବାହାର କରାଯାଇପାରେ। ଅଁଳାକୁ କିଛି ସମୟ ଖରାରେ ଶୁଖାଇ ଚୋପା ନରମ ହେଲେ ମଞ୍ଜି କାଢ଼ି ଦେଇ ମଜ୍ଜା ବା ଖୋଳପାକୁ ପାଖୁଡ଼ା ପାଖୁଡ଼ା କରି ଛଡ଼ାଇ ପୁଣି ଶୁଖାଇ ଦିଆଯାଇପାରେ।

# ଚାର

ଚନ୍ଦା ବା ଟାଙ୍ଗରା ମୁଣ୍ଡର ପ୍ରତିକାର କରିପାରିବା ଭଳି ଶକ୍ତି ଯେଉଁ ମଞ୍ଜିର ତେଲରେ ରହିଛି (ନନ୍ଦ ୧୯୯୬) ବୋଲି ବିଶ୍ୱାସ କରାଯାଏ, ସେଇଟି ହେଉଛି ଚାର । ପିଆଳ, ଖରସ୍କନ୍ଦ, ରାଜାଦନ ଇତ୍ୟାଦି ସ୍ଥାନୀୟ ନାମରେ ମଧ ପରିଚିତ ଏଇ ଗଛଟିର ବୈଜ୍ଞାନିକ ମତରେ ଦୁଇଟି ଜାତି ରହିଛି ; ସେଥିରୁ ଗୋଟିଏ (Buchanania axillaris/angustifolia ବା Buchanan's Mango)ର କାଠ ଅପେକ୍ଷାକୃତ ଦୁର୍ବଳ (ସହଜରେ ପୋକ ଲାଗନ୍ତି) ହୋଇଥିବା ବେଳେ ଅପର(Buchanania lanzan/ latifolia)ଟିର କାଠ ତା' ତୁଳନାରେ ଶକ୍ତ ଥାଏ ।

ତେବେ, କହିବା ବାହୁଲ୍ୟ, ଚାର ଗଛର ପ୍ରସିଦ୍ଧି ତା'ର କାଠ ପାଇଁ ନୁହେଁ, ବରଂ ତା'ର ଫଳ, ବିଶେଷତଃ ମଞ୍ଜି ଭିତରେ ଥିବା ଶସ ପାଇଁ । ଚାର ଫଳ ସୁସ୍ୱାଦୁ ଏବଂ ମଞ୍ଜି ଭିତରେ ଥିବା ଶସକୁ କାବୁଲି ବାଦାମ (Almond) ସହିତ ତୁଳନା କରାଯାଏ ବୋଲି ଚାରକୁ Almondette tree ବା Cuddapah Almond ବୋଲି ମଧ କହିଥା'ନ୍ତି । ଦୁଇ ଜାତିର ଗଛ ଭିତରୁ Buchanania axillarisର ଶସ ସର୍ବୋତ୍ତମ ବୋଲି ବିଶ୍ୱାସ କରାଯାଏ ।

ପାଚିଲା ଚାର ଫଳକୁ ଗଛରୁ ତୋଳି ଅଥବା ତଳୁ ଗୋଟାଇ ଆଣି ସେଥିରୁ ଶସ ବାହାର କରାଯାଏ । ଶୁଖିଲା ମଞ୍ଜିର ଦର କେଜି ପ୍ରତି ୧୦ରୁ ୧୫ ଟଙ୍କା ପର୍ଯ୍ୟନ୍ତ ହେଉଥିବା ବେଳେ ଶସ ପାଇଁ ସଂଗ୍ରହକାରୀମାନେ ±୧୨୫ଟଙ୍କା (ପ୍ରତି କେଜି) ପର୍ଯ୍ୟନ୍ତ ପାଇଥାନ୍ତି ।[୧୩] ଶସର ବଜାର ଦର ପ୍ରାୟ ୨୫୦ରୁ ୪୦୦ ଟଙ୍କା ପର୍ଯ୍ୟନ୍ତ ହୋଇଥାଏ ଏବଂ ଏଇ ବାଦାମ (ଚାର) ମିଠା ତିଆରିରେ ତଥା ଗୁଆ ଗୁଣ୍ଡ ଇତ୍ୟାଦିରେ ପଡ଼ିଥାଏ ସେଗୁଡ଼ିକର ସ୍ୱାଦୁ ବଢ଼ାଇବା ଲାଗି ।

କଞ୍ଚା ଫଳର ମଞ୍ଜି ହାଲୁକା ଥାଏ, ତେଣୁ ପାଚିଲା ଫଳର ମଞ୍ଜିରୁ ହିଁ ଭଲ ଶସ ମିଳିଥାଏ କାରଣ ଶସର ବିକାଶ କଞ୍ଚା ଫଳରେ ଠିକ୍ ରୂପେ ହୋଇନଥାଏ । ମଞ୍ଜିରେ ଭଲ (ନିଦା) ଶସ ଅଛି କି ନାହିଁ ଜାଣିବା ପାଇଁ ତାକୁ ପାଣିରେ ପକାଇ ଦିଆଯାଏ; ଯେଉଁ ମଞ୍ଜି ଭାସିଉଠେ, ତାକୁ କଞ୍ଚା ବୋଲି ବୁଝାଯାଏ ଏବଂ ଯାହା ବୁଡ଼ିଯାଏ, ସେଥିରୁ ହିଁ ଭଲ ଶସ ମିଳିବ ବୋଲି ଜଣାପଡ଼େ । ବେପାରୀମାନେ ଏଇ ପଦ୍ଧତିରେ ଭଲ ମଞ୍ଜି (ଚାର)କୁ ଅଲଗା କରିଥା'ନ୍ତି । ମଞ୍ଜି ଯେତେ ଧଳା ଏବଂ ସଫା ରହିବ (ଧୂଆ ଯାଇଥିବ), ତା'ର ଦର ସେତେ ଅଧିକ ହୁଏ ।

---

୧୩. କେତେକ ଅଞ୍ଚଳରେ ସଂଗ୍ରହକାରୀଙ୍କୁ ନଗଦ ଟଙ୍କା ପରିବର୍ତ୍ତେ ଦ୍ରବ୍ୟ ଆକାରରେ (ଅର୍ଥାତ୍ ଏକ କେଜି ଶସ ପାଇଁ ପ୍ରାୟ ୫୦ କେଜି ଲୁଣ ଅଥବା ୧୨/୧୫ କେଜି ଚାଉଳ) ମଧ ମିଳିଥାଏ ।

ଉଭୟ କଞ୍ଚା/ଦରପାଚିଲା ତଥା ପାଚିଲା ଫଳରୁ ମଞ୍ଜି ସଂଗ୍ରହ କରାଯାଏ । ପାଚିଲା ଫଳକୁ ଗୋଟିଏ ରାତି ପାଣିରେ ଭିଜାଇ ହାତରେ ଘଷିଲେ ଖୋଳପା ଓ ମଞ୍ଜି ଅଲଗା ହୋଇଯାଏ । ଅପର ପକ୍ଷରେ କଞ୍ଚା ବା ଦରପାଚିଲା ଫଳକୁ ଢିଙ୍କିରେ କୁଟି ଶୁଖାଇଦିଆଯାଏ, ତା'ପରେ ତାକୁ ପାଛୁଡ଼ିଲେ ମଞ୍ଜି ଅଲଗା ହୋଇଯାଏ ।

ମଞ୍ଜି ଭିତରୁ ଶସ କାଢ଼ିବା ପାଇଁ କେତେକ ଘୋରଣା ବା ପଥରଚକି (ଯେଉଁଥିରେ ବିରି ଇତ୍ୟାଦି ଫାଳ କରାଯାଏ) ବ୍ୟବହାର କରୁଥିବା ବେଳେ ଅନେକେ ତା'କୁ ହାତରେ ଭାଙ୍ଗିଥା'ନ୍ତି ।

ଭାଙ୍ଗିବା ପୂର୍ବରୁ ମଞ୍ଜିକୁ ଗୋଟିଏ ରାତି ଭିଜାଇ ରଖାଯାଏ । ତା' ପୂର୍ବରୁ ତାକୁ ସଫା କରି ଶୁଖାଇ ଦିଆଯାଇଥାଏ । ହାତରେ ଗୋଟିଏ ଗୋଟିଏ କରି ପଥରରେ ଛେଚି ଭାଙ୍ଗିଲେ ଅନେକ ସମୟ ଲାଗେ, ହୁଏତ ସକାଳ ୮ଟାରୁ ସଂଧା ୫ଟା ପର୍ଯ୍ୟନ୍ତ ମାତ୍ର ୨୫୦ ଗ୍ରାମ ଶସ କାଢ଼ିହୁଏ । କିନ୍ତୁ ଏ ପଦ୍ଧତିରେ ସତର୍କ ଦୃଷ୍ଟି ତଥା ଯତ୍ନ ଜଡ଼ିତ ଥିବାରୁ ଶସ ପ୍ରାୟତଃ ଅକ୍ଷତ (ଅଭଙ୍ଗା) ହୋଇ ବାହାରେ । ଅପର ପକ୍ଷରେ, ଘୋରଣାରେ ସେତିକି ସମୟ ଭିତରେ ତା'ର ପ୍ରାୟ ୮ ଗୁଣ ପର୍ଯ୍ୟନ୍ତ ଶସ କାଢ଼ିହୁଏ; କିନ୍ତୁ ଏଥିରେ ଶସ ଭାଙ୍ଗି- ବା ନଷ୍ଟ ହୋଇଯିବାର ଯଥେଷ୍ଟ ଆଶଙ୍କା ଥାଏ । ପ୍ରାୟ ୫ କେଜି ମଞ୍ଜିରୁ ୧ କେଜି ଶସ ମିଳିଥାଏ । ଏହି ଶସକୁ ଶୁଖାଇ ଦେବାକୁ ହୁଏ ।

ସଂଗେ ସଂଗେ ବିକ୍ରି ହୋଇନପାରିଲେ ଚାର ଶସକୁ ଯତ୍ନରେ ସାଇତି ରଖିବାକୁ ହୁଏ ଯେପରି କି ପିମ୍ପୁଡ଼ି ଆଦି ନଲାଗିବ । କୁହାଯାଏ ଯେ ସୁତା କନା ବା ଅନ୍ୟ କନାରେ ବାନ୍ଧି ଏଇ ଦାନାକୁ ରଖିବା ଭଲ କାରଣ ପ୍ଲାଷ୍ଟିକ୍ ଅଖା/ବ୍ୟାଗ ଆଦିରେ ରଖିଲେ ଏଥିରେ ଲାଲ ରଙ୍ଗ ଧରିଯାଏ । ଲାଲ ପଡ଼ିବା ସହିତ ସ୍ୱାଦୁ ନଷ୍ଟ ହେବାର ଆଶଙ୍କା ମଧ ବଢ଼ିଯାଏ ଅର୍ଥାତ୍, ଶସ ତିକ୍ତ ବୋଧ ହୋଇପାରେ ଯାହା ଫଳରେ କି ଦର କେଜି ପ୍ରତି ପ୍ରାୟ ୩୦/୪୦ ଟଙ୍କା କମିଯାଏ । ତେବେ ବେପାରୀମାନେ ଭିତରେ ଜରି (ପଲିଥିନ)ର ଆସ୍ତରଣ ଥିବା ଅଖା ବସ୍ତାରେ ରଖି ଏହାକୁ ଚାଲାଣ କରିଥା'ନ୍ତି କାରଣ ଆର୍ଦ୍ରତା ସଂସ୍ପର୍ଶରେ ଆସିଲେ ଚାର ଶସ ଖରାପ ହୋଇଯାଏ ଏବଂ ଜରି ଆସ୍ତରଣ ସେଥିରୁ ରକ୍ଷା କରିଥାଏ ।

ଗୁଜୁରାଟର ଆଦିବାସୀମାନେ ଏଇ ଶସକୁ ମସ୍ତିଷ୍କ ପାଇଁ ଉପକାରୀ ବୋଲି ବିବେଚନା କରନ୍ତି । ଏହା ପୁଷ୍ଟିକର ତଥା ଶକ୍ତିଦାୟକ । ଏଥିରୁ ମୃଦୁ ସୁଗନ୍ଧଯୁକ୍ତ, ଈଷତ୍ ହଳଦିଆ ରଙ୍ଗର ଯେଉଁ ତେଲ ବାହାର କରାଯାଏ, ସେ ତେଲ ଅଲିଭ ତେଲ ତଥା ବାଦାମ (କାବୁଲି) ତେଲର ବିକଳ୍ପ ଭାବରେ ବ୍ୟବହାର କରାଯାଇଥାଏ ।

ଚାର ଗଛର ଛାଲି ପ୍ରାକୃତିକ ବାର୍ଣ୍ଣିସ ଭଳି କାମ ଦେଇଥାଏ ଏବଂ କେରଳରେ ଏହାକୁ ଚମଡ଼ା କଷିବା ପାଇଁ ବ୍ୟବହାର କରନ୍ତି । ଚାର ପତ୍ର ପଶୁ ଖାଦ୍ୟ ହେବା ସହିତ ଘା' ଭଲ କରିବା ପାଇଁ ମଧ

ବ୍ୟବହୃତ ହୋଇଥାଏ (ପତ୍ରଗୁଣ୍ଡ)। କୋଳିର ରସ ଅତ୍ୟଧିକ ଝାଡ଼ା/ନାଳରକ୍ତ ଝାଡ଼ା ଭଲ କରିପାରେ (ମିଶ୍ର ୧୯୯୧)।

ମରୁଡ଼ି ବା ଅନାବୃଷ୍ଟି ଚାର ଗଛ ପାଇଁ କ୍ଷତିକାରକ; ତୁଷାରପାତ ତା' ଅପେକ୍ଷା ଅଧିକ କ୍ଷତିକାରକ । ଜଳମଗ୍ନ ଭୂମିରେ ଏ ଗଛ ବଢ଼ିପାରେ ନାହିଁ, କିନ୍ତୁ ଶୁଷ୍କ ଅଞ୍ଚଳରେ ପାହାଡ଼ିଆ ଢାଲୁ (Slope) ଗୁଡ଼ିକୁ ବୃକ୍ଷାବୃତ କରିବା ପାଇଁ ଚାର ବେଶ୍ ଉପଯୋଗୀ ସିଦ୍ଧ ହୋଇଥାଏ ଏବଂ ଅବକ୍ଷୟିତ ଭୂମି ତଥା ମୋରମ ମାଟିରେ ମଧ ଏହା ଭଲ ବଢ଼ିପାରେ । କୁସୁମୀ ଲାଖର ଚାଷ ପାଇଁ ମଧ ଏ ଗଛ ଭଲ କାମ ଦେଇଥାଏ ଯଦିଓ ଲାଖ ଚାଷ ଦ୍ୱାରା ଚାର ଫଳର ଉତ୍ପାଦନ ବ୍ୟାହତ ଆଶଙ୍କା ଥାଏ ।

ଖରାରେ ତଳେ ପଡ଼ିରହିଥିବା ଚାରମଞ୍ଜିର ଅଙ୍କୁରୋଦ୍‌ଗମ ଶକ୍ତି ଅତ୍ୟନ୍ତ କ୍ଷୀଣ, ତେଣୁ ସଦ୍ୟ କଢ଼ାଯାଇଥିବା ମଞ୍ଜି ଗଛ ଲଗାଇବା ପାଇଁ ଅଧିକ ଉପଯୁକ୍ତ ।

ଡେରାଡୁନସ୍ଥିତ ବନ ଗବେଷଣା ପ୍ରତିଷ୍ଠାନରେ କରାଯାଇଥିବା ପରୀକ୍ଷଣରୁ ଜଣାପଡ଼ିଥିଲା ଯେ ଚାର ତଳି ପ୍ରସ୍ତୁତ କରି ଲଗାଇବା ତୁଳନାରେ ସିଧାସଳଖ ମଞ୍ଜି ପୋତି ଗଛ ବଢ଼ାଇବା ଅଧିକ ସଫଳତା ଦେଉଛି। ପାକଳ ଚାରା ଫଳଗୁଡ଼ିକ ବର୍ଷାଋତୁର ଠିକ୍ ପୂର୍ବରୁ ବା ବର୍ଷା ଆରମ୍ଭ ହେଉଥିବା ବେଳେ ଝଡ଼ିଥା'ନ୍ତି। ସେଥିରୁ ମଞ୍ଜି ସଂଗ୍ରହ କରି ପୋତିଦିଆଯାଇପାରେ। କିଛିଦିନ ରଖିବାକୁ ହେଲେ ଛାଇରେ ଶୁଖିଥିବା ମଞ୍ଜିକୁ ଝୋଟ ବସ୍ତାରେ ସଂରକ୍ଷିତ କରାଯାଇପାରେ। ପୋତିବା ପୂର୍ବରୁ ମଞ୍ଜିକୁ ଥଣ୍ଡା ପାଣିରେ ୧୨ ଘଣ୍ଟା ଭିଜାଇ ରଖିବା ଭଲ।

ଯଦିଓ ଚାର ଗଛ ସୂର୍ଯ୍ୟକିରଣ ବିଶେଷ ଆବଶ୍ୟକ କରେ, ତଥାପି ପ୍ରବଳ ଆଲୋକାଶାୟୀ ନୁହେଁ। ଏହାର ଚାରାମାନ ଧୀର ଗତିରେ ହିଁ ବଢ଼ିଥା'ନ୍ତି।

***

# ତେନ୍ତୁଳି

କୂଅ/ନଳକୂଅରୁ ମିଳୁଥିବା ପାଣି କେତେକ ସ୍ଥାନରେ ତା'ର ରାସାୟନିକ ବିଚ୍ୟୁତି ବଶତଃ ପାନୀୟ ଉପଯୋଗୀ ହୋଇନଥାଏ । ନିର୍ଦ୍ଦିଷ୍ଟ କେତେପ୍ରକାର ରାସାୟନିକ ପଦାର୍ଥର ପରିମାଣ ପାଣିରେ ଅଧିକ ହେଲେ ଏ ପ୍ରକାର ସମସ୍ୟା ଉପୁଜିଥାଏ । ପଶ୍ଚିମବଙ୍ଗରେ ଶଙ୍ଖୁଆ (ଆର୍ସେନିକ) ଦ୍ୱାରା ବିଷାକ୍ତ ହୋଇପଡ଼ିଥିବା ଭୂତଳ ଜଳ ବହୁ ଲୋକଙ୍କୁ ବିକଳାଙ୍ଗ କରିସାରିଲାଣି ଏବଂ ଏଥିରୁ ଅନୁମାନ କରାଯାଇପାରେ ଯେ ପାନୀୟ ଜଳର ରାସାୟନିକ ବିଚ୍ୟୁତି କି ଗୁରୁତର ପରିଣାମ ସୃଷ୍ଟି କରିପାରେ ।

ଏଇଭଳି ଏକ ବିଚ୍ୟୁତି ହେଉଛି ଫ୍ଲୋରାଇଡ ନାମକ ଉପାଦାନର ଆଧିକ୍ୟ । ଫ୍ଲୋରାଇଡ୍ ଅଭାବରେ ବି ଶରୀର କ୍ଷତିଗ୍ରସ୍ତ ହୁଏ (ଯଥା : ଦାନ୍ତର ବିକାଶ ଠିକ୍ ରୂପେ ହୋଇପାରେ ନାହିଁ), କିନ୍ତୁ ଅଧିକ ଫ୍ଲୋରାଇଡ ଦେହକୁ ଗଲେ ଫ୍ଲୁରୋସିସ୍ ନାମକ ରୋଗ ହୁଏ ଯେଉଁଥିରେ ଦାନ୍ତର ସୁରକ୍ଷାକାରୀ ଆସ୍ତରଣ (ଏନାମେଲ) ନଷ୍ଟ ହୋଇଯାଏ ଏବଂ ହାଡ଼ ସବୁ ମଧ ଆକ୍ରାନ୍ତ ହୋଇଥାଏ ; ଫଳରେ ଦାନ୍ତ କଳାପଡ଼ିଯାଏ ଏବଂ ହାତଗୋଡ଼ ବଙ୍କା ହୋଇଯାଏ ।

ଓଡ଼ିଶାରେ ନୟାଗଡ଼ ଜିଲ୍ଲାର ଓଡ଼ଗାଁ, ନୟାଗଡ଼, ନୂଆଗାଁ ଓ ଭାପୁର ବ୍ଲକ; ନୂଆପଡ଼ା ଜିଲ୍ଲାର କାର୍ଲ୍ଲାପେଟ ଓ ତିରକେଲା ଭଳି କେତେକ ଗାଁ; ଅବିଭକ୍ତ ଫୁଲବାଣୀ ଜିଲ୍ଲାର ଚାରିଛକ ଭଳି କେତେକ ସ୍ଥାନ ତଥା ଅବିଭକ୍ତ କଟକ ଜିଲ୍ଲାର ବରୀ ଭଳି ଅନ୍ୟ କେତେକ ଅଞ୍ଚଳରେ ପାଣି ଅଧିକ ଫ୍ଲୋରାଇଡ୍‌ଯୁକ୍ତ ଥିବାର ଦେଖାଯାଇଛି । ତେବେ ଏଇ ପାଣି ପିଇବାକୁ ବାଧ ଲୋକମାନଙ୍କ ପାଇଁ ଗୋଟିଏ ସରଳ, ସହଜ ପ୍ରତିକାର ବର୍ତ୍ତମାନ ହାଇଦ୍ରାବାଦସ୍ଥିତ ଜାତୀୟ ପୁଷ୍ଟିସାର ପ୍ରତିଷ୍ଠାନ (National Institute of Nutrition)ର ବୈଜ୍ଞାନିକମାନେ ଆବିଷ୍କାର କରିଛନ୍ତି ଏବଂ ସେଇଟି ହେଉଛି ଆମର ବହୁ ପରିଚିତ ତେନ୍ତୁଳି । ପ୍ରତିଦିନ କିଛି କିଛି ତେନ୍ତୁଳି ଖାଇଲେ ଫ୍ଲୋରାଇଡ୍‌ର ଆଧିକ୍ୟଜନିତ ରୋଗରୁ ରକ୍ଷା ମିଳିବ ବୋଲି ଏଇ ବୈଜ୍ଞାନିକମାନେ କହିଛନ୍ତି (ସମ୍ବାଦ, ୪-୯-୨୦୦୧, ପୃ-୫) ।

ତେନ୍ତୁଳି (Tamarindus indica)କୁ ଏକ 'ଜଙ୍ଗଲୀ ଗଛ (forest species) ରୂପେ ବନ ବିଜ୍ଞାନୀମାନେ ଗ୍ରହଣ କରନ୍ତି ନାହିଁ ଯଦିଓ ଏ ଗଛ ଜଙ୍ଗଲରେ ବି ଦେଖାଯାଏ । ଜନବସତି ଥିବା ଅଞ୍ଚଳଗୁଡ଼ିକରେ ଏ ଗଛ ଅନେକ ସ୍ଥାନରେ ଦେଖାଯାଏ କାରଣ ଲୋକେ ଏହାର ବଂଶବିସ୍ତାର ପାଇଁ ସାହାଯ୍ୟ କରିଛନ୍ତି ।

ତେନ୍ତୁଳି ଗଛ ତା'ର ଫଳ (କଇଁୟା) ପାଇଁ ପ୍ରସିଦ୍ଧ ଏବଂ ଏଇ ଫଳ ସଂଗ୍ରହ ଲାଗି ଲୋକେ ଯେଉଁ ପଦ୍ଧତି ଅନୁସରଣ କରିଥା'ନ୍ତି, ତାହା ସାଧାରଣତଃ ସ୍ଥାୟୀ ଉତ୍ପାଦନକ୍ଷମ ସୂତ୍ରାବଳୀର ଅନୁରୂପ ହୋଇଥାଏ ।

ଫଳ ପାଚିଯିବା ପରେ ଗଛ/ଡାଳକୁ ହଲାଇଦେଲେ ସେଗୁଡ଼ିକ ଝଡ଼ିପଡ଼େ । ଏଥିରେ ସଂଗ୍ରହକାରୀର ସୁବିଧା, ତା'ଛଡ଼ା ଗଛର ବି କ୍ଷତି ହୁଏ ନାହିଁ । ବାଡ଼ି ଦ୍ୱାରା ଆଘାତ କରି ଫଳ ଛିଣ୍ଡାଇଲେ କଅଁଳ ଥିବା ପତ୍ର ଇତ୍ୟାଦି ନଷ୍ଟ ହୋଇଯିବାର ଯଥେଷ୍ଟ ଆଶଙ୍କା ଥାଏ ।

ତେନ୍ତୁଳି ମଞ୍ଜିର ଅଙ୍କୁରୋଦ୍‌ଗମ୍ ଶକ୍ତି ପ୍ରାୟ ୨ ବର୍ଷ ପର୍ଯ୍ୟନ୍ତ ରହିଥାଏ । ଏପ୍ରିଲ ମାସରେ ହାଲୁକା ମାଟିରେ ତଳି ପଟି ତିଆରି କରି ମଞ୍ଜି ପୋତିବା ପରେ ନିୟମିତ ପାଣି ଦିଆଯିବା ଦ୍ୱାରା ଚାରା ଜନ୍ମିଥାଏ ଏବଂ ଅଗଛା ବାଛିବା ତଥା ଛାଇରେ ରଖିବା ଦ୍ୱାରା ତା'ର ବିକାଶ ଭଲଭାବେ ହୋଇଥାଏ । ଚାରାର ପ୍ରଧାନମୂଳ ବହୁ ଅଧିକ ଲମ୍ବ ହେବା ପୂର୍ବରୁ ତା'କୁ ମାଟି ପିଣ୍ଡଳା ସହ ଉଠାଇ ନେଇ ଉପଯୁକ୍ତ ସ୍ଥାନରେ ବର୍ଷା ଦିନରେ ଲଗାଯାଏ । ଦୁଇବର୍ଷର ଚାରା ଲଗାଯିବା ପାଇଁ ଉପଯୁକ୍ତ । ଫଳ ହେବା ପାଇଁ ପ୍ରାୟ ୧୦/ ୧୫ ବର୍ଷ ସମୟ ଲାଗଥାଏ, କିନ୍ତୁ ମରିବା ପର୍ଯ୍ୟନ୍ତ ଗଛରେ ଫଳ ହେଉଥାଏ ।

ମଞ୍ଜି ଛଡ଼ାଯାଇଥିବା ତେନ୍ତୁଳିର ଦର ଅଧିକ ହୋଇଥାଏ । ୧୯୯୫ ମସିହାରେ କରାଯାଇଥିବା ଏକ ଅନୁଧାନରୁ ଜଣାପଡ଼େ ଯେ ମଞ୍ଜି ଛଡ଼ାଇବା ପରେ ଏକ କେଜି ତେନ୍ତୁଳିର ଓଜନ ପ୍ରାୟ ୩୭.୫ ପ୍ରତିଶତ କମିଯାଏ । କିନ୍ତୁ ସେଥିରୁ ଏବଂ ମଞ୍ଜିରୁ ଯେଉଁ ଆୟ ହୋଇଥାଏ, ତାହା ମଞ୍ଜିଥିବା ତେନ୍ତୁଳିରୁ ହୋଇଥିବା ଆୟ ଅପେକ୍ଷା ଅନ୍ତତଃ ପ୍ରାୟ ୧୮% ଅଧିକ (ମଞ୍ଜି ଛଡ଼ାଇବା ଜନିତ ପରିଶ୍ରମକୁ ହିସାବକୁ ନ ନେଲେ) । (ମିଶ୍ର ୧୯୯୫)

ତେନ୍ତୁଳିର ଦର ବେଳେ ବେଳେ ଯଥେଷ୍ଟ କମିଯାଏ ଅଥବା କିଣିବା ଲାଗି ବେପାରୀଙ୍କର ଅଭାବ ଦେଖାଯାଏ । ନିକଟ ଅତୀତରେ କୋରାପୁଟ ଜିଲ୍ଲା ଭଳି କେତେକ ଅଞ୍ଚଳରେ ସେଇଭଳି ସମସ୍ୟା ଦେଖାଦେଇଥିଲା ଯଦ୍ୱାରା ଗରିବ ସଂଗ୍ରହକାରୀମାନେ କ୍ଷତିଗ୍ରସ୍ତ ହୋଇଥିଲେ । ଏଇ ପରିପ୍ରେକ୍ଷୀରେ ତେନ୍ତୁଳିର ଉପଯୁକ୍ତ ସଂରକ୍ଷଣ ଗୁରୁତ୍ୱପୂର୍ଣ୍ଣ ହୋଇଉଠେ ।

ଓଡ଼ିଶାର କେତେକ ଅଞ୍ଚଳରେ ତେନ୍ତୁଳି ସଂରକ୍ଷଣର ପାରମ୍ପରିକ ପଦ୍ଧତିଟି ବେଶ୍ ସରଳ । ମଞ୍ଜି ବାହାର କରି ତେନ୍ତୁଳିରେ ଲୁଣ ଗୋଳାଇ ରଖିଦେଲେ ପ୍ରାୟ ବର୍ଷେ ପର୍ଯ୍ୟନ୍ତ ଏହା ପୋକ ନଲାଗି ରହିପାରେ । ଅପର ପକ୍ଷରେ କେହି କେହି କୁହନ୍ତି ଯେ ତେନ୍ତୁଳିକୁ ଲୁଣ ପାଣିରେ ବୁଡ଼ାଇ ଖରାରେ ଶୁଖାଇବା ପରେ ସାଇତି ରଖିଲେ ଏହା ଅଧିକ ଦିନ ସତେଜ ରହିପାରିବ (ପ୍ରଜାତନ୍ତ୍ର, ୪-୯-୨୦୦୧, ପୃ-୯)

ମରୁଡ଼ିଗ୍ରସ୍ତ ଅଞ୍ଚଳରେ ତିଷ୍ଠି ପାରିବା ଭଳି ଶକ୍ତି ତେନ୍ତୁଳି ଗଛର ରହିଛି । ତା'ଛଡ଼ା, ଏ ଗଛ ତଳେ ମାଟି ଅପେକ୍ଷାକୃତ ପରିଷ୍କାର ଥାଏ, ଅର୍ଥାତ ଶୁଖିଲା ପତ୍ର ଜମି ନିଆଁ ଧରିବାର ଅନୁକୂଳ ପରିସ୍ଥିତି ନଥାଏ । ସେଥିପାଇଁ ଅଗ୍ନିରେଖା (fire line)[୧୩(କ)] ରେ ଲଗାଯିବା ପାଇଁ ଏ ଗଛ ଉପଯୁକ୍ତ । ତେବେ ତୁଷାରପାତ ତେନ୍ତୁଳି ଗଛର କ୍ଷତି ଘଟାଏ ।

୧୩(କ). ଜଙ୍ଗଲରେ ଗୋଟିଏ ଭାଗରେ ବଣପୋଡ଼ି ହେଲେ ଅନ୍ୟ ଭାଗକୁ ଯେପରି ନ ବ୍ୟାପେ, ସେଥିପାଇଁ ଦୁଇ ଭାଗ ମଝିରେ କିଛି ସ୍ଥାନ ରାସ୍ତା ପରି ଖୋଲା ଛାଡ଼ି ଦିଆଯାଏ ଏବଂ ତାକୁ ନିୟମିତ ପରିଷ୍କାର ରଖାଯାଏ । ଏଇ ବିଭାଜକ ରେଖାକୁ 'ଅଗ୍ନିରେଖା' କୁହନ୍ତି ।

ହଜମକାରୀ 'ଚାରୁପାଣି'ରେ ଲାଗୁଥିବା ତେନ୍ତୁଳିର ବିଭିନ୍ନ ଚିକିତ୍ସାଗତ ଉପଯୋଗ ଡ. କମଳକୁମାରୀ ପଟ୍ଟନାୟକ ତଥା ପ୍ରଜ୍ଞା ଭାଲେଣ୍ଟିନାଙ୍କ ଲିଖିତ 'ବୃକ୍ଷଲତାର ଔଷଧିଗୁଣ' (ଦ୍ୱିତୀୟ ଭାଗ) ତଥା ଶ୍ରୀ ବ୍ରଜବନ୍ଧୁ ତ୍ରିପାଠୀଙ୍କ ରଚିତ 'ଦ୍ରବ୍ୟଗୁଣ କଳ୍ପଦ୍ରୁମ' (ପ୍ରଥମ ଭାଗ)ରେ ଦେଖିବାକୁ ମିଳେ । ତା'ର ଅନୁସରଣରେ କେତୋଟି ଉପଯୋଗିତା ଏଠାରେ ଦିଆଯାଉଛି :

- ତେନ୍ତୁଳିମଣ୍ଡର ପାଣି ପିଇଲେ ଦୁଦୁରା, ଗଞ୍ଜେଇ ଓ ମଦ ନିଶା ଛାଡ଼ିଯାଏ ।
- ଖରାଦିନେ ତୃଷାର୍ତ୍ତ ବାଟୋଇ ହଠାତ୍ ପାଣି ନପାଇଲେ ଅଳ୍ପ କିଛି ତେନ୍ତୁଳି ପାଟିରେ ପକାଇବା ଦ୍ୱାରା ଉପକାର ପାଏ କାରଣ ଏହା ଦ୍ୱାରା ଲାଳ ଝରି ପାଟି ଶୁଖିଯିବାରୁ ଆପାତତଃ ରକ୍ଷାମିଳେ ।
- କିଛି ତେନ୍ତୁଳି ପତ୍ର ସହିତ ଗୋଲମରିଚ ବାଟି 'ମାଙ୍କଡ଼ସା ମୁତିବା' (ହର୍ପିସ୍ ?) ସ୍ଥାନରେ ୨/୩ଦିନ ଲଗାଇଲେ ଉପକାର ମିଳେ ।
- ଦେହର କୌଣସି ଅଂଶ ପୋଡ଼ିଗଲେ ତେନ୍ତୁଳି ପତ୍ର ବା ତେନ୍ତୁଳି (ମଣ୍ଡ)କୁ ବାଟି ଲଗାଇଲେ ତୁରନ୍ତ ଉପକାର ମିଳେ । ତା'ଛଡ଼ା, ଦେହହାତ ଜଳାପୋଡ଼ା ହେଲେ କିଛି ତେନ୍ତୁଳି ପାଣିରେ ବତୁରାଇ ସେ ପାଣିକୁ ଛାଣିବା ପରେ ଚିନି ମିଶାଇ ପିଇଲେ ଦାହ ଯନ୍ତ୍ରଣାର ଉପଶମ ହୁଏ ।
- ତେନ୍ତୁଳି ପତ୍ରକୁ ପାଣିରେ ବାଟି ସେଥିରେ କିଛି ସୋଡ଼ା ଭଲଭାବେ ମିଶାଇବା ପରେ ଆଣ୍ଠୁରେ ଲଗାଇଲେ ଆଣ୍ଠୁଗଣ୍ଠି ବାତରେ ଉପକାର ମିଳେ ।
- ମରା (ହାତ ତିଆରି) ନଡ଼ିଆ ତେଲ ଲଗାଇ ତା'ଉପରେ ଶୁଖିଲା ତେନ୍ତୁଳି ଛାଲିର ପାଉଁଶ ଛିଞ୍ଚିଲେ ପୋଡ଼ା ଘା' ଶୀଘ୍ର ଭଲ ହୋଇଥାଏ ।

ଓଡ଼ିଶାର କେତେକ ଅଞ୍ଚଳରେ ଏ ଗଛକୁ ସନ୍ଦେହର ଦୃଷ୍ଟିରେ ଦେଖନ୍ତି, ଏପରିକି ଘରବାଡ଼ିରେ ଉଠୁଥିବା ତେନ୍ତୁଳି ଚାରାକୁ ଉପାଡ଼ି ଫିଙ୍ଗି ଦେବାର ଘଟଣା ମଧ୍ୟ ଶୁଣାଯାଇଛି । କିନ୍ତୁ ବାସ୍ତୁଶାସ୍ତ୍ରରେ ତେନ୍ତୁଳିକୁ ଏକ ଅଶୁଭ ବୃକ୍ଷ ରୂପେ ଦେଖାଯାଇନାହିଁ, ସେଥିରେ କେବଳ କୁହାଯାଇଛି ଯେ ଅନ୍ୟ ଗଛମାନଙ୍କ ପରି ଏ ଗଛ ମଧ୍ୟ ତା'ର ଉଚିତ ସ୍ଥାନ (ଦିଗ)ରେ ରହିଲେ ମଙ୍ଗଳ ହୁଏ । ଅପରପକ୍ଷରେ ଅନେକ ସ୍ଥାନରେ ଘର ପାଖରେ ଉଠିଥିବା ତେନ୍ତୁଳି ଗଛକୁ ଦିଗବିଚାର କରାନଯାଇ ବଢ଼ିବାକୁ ଦିଆଯାଇଛି । ନୟାଗଡ଼ ଜିଲ୍ଲାର ନୋଡର ପଞ୍ଚାୟତ ଅନ୍ତର୍ଗତ ଆନନ୍ଦାପଲ୍ଲୀ ଗାଁ' ନିକଟରେ ଗୋଟିଏ କଇଁଆ ତୋଟା ରହିଛି ଯେଉଁଠି ଜଣେ ଠାକୁରାଣୀ ପୂଜା ପାଆନ୍ତି ଏବଂ ସେ ତୋଟାର ଗଛ (ତେନ୍ତୁଳି) କଟାଯାଏ ନାହିଁ ।

ଏ ଗଛର ଛାଇରେ ଅନ୍ୟ ଗଛ ବଢ଼ିପାରେ ନାହଁ ବୋଲି ରାସ୍ତାକଡ଼ ଅଥବା ଜଙ୍ଗଲସୀମାରେ ଲଗାଇବା ଭଲ ବୋଲି କୁହାଯାଏ । ଅନାବୃଷ୍ଟି ଅଞ୍ଚଳରେ ପତିତ ଜମିରେ ବୃକ୍ଷରୋପଣ ପାଇଁ ଏ ଗଛ ବେଶ୍ ଉପଯୋଗୀ ।

## ସୁଖପ୍ରସବର ଉପାୟ

ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ବିଂଶ ଶତାବ୍ଦୀର ଭାରତର ମହାନତମ ଯୋଗୀମାନଙ୍କ ମଧ୍ୟରେ ଅନ୍ୟତମ । ଲୋକକଲ୍ୟାଣାର୍ଥେ ଯୋଗସାଧନା ବିଷୟକ ଯେଉଁ ପାଞ୍ଚଗୋଟି ପୁସ୍ତକ ସେ ରଚନା କରିଯାଇଛନ୍ତି, ସେ ମଧ୍ୟରୁ 'ଯୋଗୀଗୁରୁ' ବିଶେଷ ଲୋକପ୍ରିୟ ଏବଂ ଏଥିରେ ସୁଖପ୍ରସବର ଗୋଟିଏ ପଦ୍ଧତି ଦେଖିବାକୁ ମିଳେ ।

ପ୍ରସବ ବେଦନା ଆରମ୍ଭ ହେଲେ ଛୋଟ ତେନ୍ତୁଳି ଚାରାଟିଏ ଉପାଡ଼ି ତା'ର ମୂଳକୁ ପାଣିରେ ବୁଡ଼ାଇ ଧୋଇଦେବା ପରେ ଗର୍ଭିଣୀଙ୍କର ସମ୍ମୁଖ ଭାଗରେ ଥିବା କେଶରେ ଏପରି ବାନ୍ଧିବେ ଯେପରିକି ମୁହଁ ଉପରକୁ ମୁଣ୍ଡବାଳର ସେହି ଅଂଶ ପଡ଼ିବା ବେଳେ ତେନ୍ତୁଳି ଚାରାର ମୂଳର ଗନ୍ଧ ପ୍ରବଳ ଭାବେ ଗର୍ଭିଣୀଙ୍କୁ ଅନୁଭୂତ ହେବ । ଏହି ଉପଚାର ହିଁ ସୁଖ ପ୍ରସବକୁ ସମ୍ଭବ କରିବ । କିନ୍ତୁ ପ୍ରସବ ପରେ ତୁରନ୍ତ ସେଇ ମୂଳ ଓ ତତ୍‌ସଂଲଗ୍ନ କେଶ-ଭାଗକୁ କତୁରୀରେ କାଟି ଫୋପାଡ଼ି ଦେବାକୁ ହେବ ନଚେତ୍ ପ୍ରସୂତିର ଅନ୍ତ୍ର ଆଦି ମଧ୍ୟ ବାହାରି ଆସିପାରେ ।

ତେବେ ଆମର ପରାମର୍ଶ ଯେ ନିରାପଦ ପ୍ରସବର ସୁଯୋଗ ସୁବିଧା (ଡାକ୍ତରଖାନା) ନଥିବା ସ୍ଥିତିରେ ହିଁ ଏ ପଦ୍ଧତି ଉପଯୋଗ କରାଯାଇପାରେ । ତା'ଛଡ଼ା, ଜଟିଳ ଗର୍ଭାବସ୍ଥାଗୁଡ଼ିକରେ ଡାକ୍ତରୀ ତତ୍ତ୍ୱାବଧାନ ଅନିବାର୍ଯ୍ୟ ।

***



ସବାଇ କ୍ଷେତ
(ଗୋବର୍ଦ୍ଧନ ଶଳ, ମୟୂରଭଞ୍ଜ)



କୋଷ୍ଠା (ମୟୂରଭଞ୍ଜ) ନିକଟସ୍ଥ ଏକ
ହାଟକୁ ବିକ୍ରି ପାଇଁ ଆସିଥିବା ସବାଇ ଘାସ



ସବାଇ ଦଉଡ଼ି ପାଗ କରିବାର ଏକ ସରଳ ଆଧୁନିକ
ପଦ୍ଧତି (ଲକ୍ଷ୍ମୀନଗର ଛକ, ଶଙ୍ଖାଭଙ୍ଗା)



ସବାଇ ଦଉଡ଼ି ପାଗ କରିବାର
ଦେଶୀ ପଦ୍ଧତି (କାଳିଆପୋଷ, ସୁନ୍ଦରଗଡ଼)



ସବାଇ ବିଡ଼ାକୁ X ପରି
ଖୋଲି ଶୁଖାଯାଇଛି
(ଶଙ୍ଖାଭଙ୍ଗା)



ପୁତୁଗ ବାନ୍ଧି ରଖାଯାଇଛି
(କୁତ୍ରା, ସୁନ୍ଦରଗଡ଼)



ଜତଗଣ୍ଡି ଯନ୍ତ୍ର (ପାକୁଟିଆ, ମୟୂରଭଞ୍ଜ)। ଦୁଇଟି ଭାରି ପଟା ମଝିରେ ଚାରିଗୋଟି ଶିଆଳି ଟୁପା ରଖାଯାଇଛି।

# ସବାଇ ଘାସ

ମଣିଷ ଯେତେବେଳେ ଜଙ୍ଗଲରେ ହେଉଥିବା ଧାନର ମୂଲ୍ୟ ବୁଝିଲା, ସେତେବେଳେ ସେ ତା'ର ଚାଷ କରିବା ଆରମ୍ଭ କଲା । ଅନେକ ବନଜାତ ଦ୍ରବ୍ୟ ଏଇଭଳି ଭାବେ କ୍ରମେ କୃଷିଜାତ ଦ୍ରବ୍ୟର ରୂପ ଗ୍ରହଣ କରିଛି ଏବଂ ସବାଇ ଘାସ (Eulaiopsis binata) ହେଉଛି ଓଡ଼ିଶାରେ ତା'ର ଅପେକ୍ଷାକୃତ ସଦ୍ୟତମ (latest) ଏକ ଦୃଷ୍ଟାନ୍ତ ।

ଓଡ଼ିଶାର ଜଙ୍ଗଲରେ ସବାଇ ଘାସ ପ୍ରାକୃତିକ ଭାବେ ଦେଖାଯାଏ, ତେବେ ସବୁଠାରେ ସମାନ ଭାବରେ ନୁହେଁ । ଅନୁଗୁଳ ଏବଂ ଫୁଲବାଣୀ ଭଳି କେତେକ ଅଞ୍ଚଳରେ ଏହା ଅପେକ୍ଷାକୃତ ଅଧିକ ଜନ୍ମିଥାଏ ବୋଲି ଶୁଣାଯାଏ ।

ଓଡ଼ିଶାରେ ଏହି ଜଙ୍ଗଲୀ ଘାସର ଚାଷ ମୟୂରଭଞ୍ଜ ଗଡ଼ଜାତରେ ହିଁ ବିଶେଷ ଭାବେ ଆରମ୍ଭ କରାଯାଇଥିଲା । ଶିମିଳିପାଳ ଜଙ୍ଗଲର କେତେକ ସ୍ଥାନ (ଯଥା : ଗୁଡୁଗୁଡ଼ିଆ ନିକଟସ୍ଥ ଜଙ୍ଗଲ)ରେ ସବାଇ ପ୍ରାକୃତିକ ଭାବେ ଜନ୍ମୁଥିଲେ ମଧ ତା'ର ବ୍ୟାବସାୟିକ ଗୁରୁତ୍ୱ ଉପଲବ୍ଧି କରି ମୟୂରଭଞ୍ଜ ମହାରାଜାଙ୍କ ଜଙ୍ଗଲ ବିଭାଗ ତରଫରୁ ସବାଇ ଚାଷ ଆରମ୍ଭ କରାଯାଇଥିଲା । ଚଉରା ଠାରେ ପ୍ରାୟ ୫ ବର୍ଗମାଇଲ ବ୍ୟାପୀ ହେଉଥିବା ସବାଇ ଚାଷ କୌଣସି କାରଣରୁ ୧୯୨୫ ମସିହା ବେଳକୁ ପରିତ୍ୟକ୍ତ ହୋଇଥିଲେ ମଧ ଜାମ୍‌ସୋଲ ଠାରେ ଏହି ଚାଷ ୧୯୪୦ର ଦଶକରେ ଅବ୍ୟାହତ ଥିଲା ।

୧୯୬୦ ଦଶକ ବେଳକୁ ଜାମ୍‌ସୋଲ ଆଖପାଖ ଅଞ୍ଚଳରେ ସାଧାରଣ ଲୋକମାନେ ସବାଇ ଚାଷ ଆରମ୍ଭ କଲେ । କ୍ରମେ ମୟୂରଭଞ୍ଜର ଅନ୍ୟ କେତେକ ଅଞ୍ଚଳରେ ବି ଏହାର ପ୍ରସାର ଘଟିଲା ଏବଂ ତା'ପର ଠାରୁ ମୁଖ୍ୟତଃ ବାରିପଦା ନିକଟବର୍ତ୍ତୀ ଅନେକ ସ୍ଥାନରେ ବ୍ୟାପକ ସବାଇ ଚାଷ କରାଯାଉଛି ।

ସବାଇକୁ ବବାଇ, ବାଗୁଲି କିମ୍ବା ପନାସୀ ବୋଲି ମଧ କୁହାଯାଏ । ଏ ଘାସ ଭଲ ବଢ଼ିଲେ ପ୍ରାୟ ୫ ଫୁଟ ଉଚ୍ଚ ହୁଏ । ଜାମ୍‌ସୋଲଠାରେ ମୟୂରଭଞ୍ଜ ରାଜ-ସରକାରଙ୍କ ସବାଇ କ୍ଷେତରେ ବର୍ଷକୁ ୩ଥର କଟେଇ ବା ଅମଳ କରାଯାଉଥିଲା, କିନ୍ତୁ ବର୍ତ୍ତମାନ ଅଧିକାଂଶ ଚାଷୀ ବର୍ଷକୁ ଦୁଇଥର ହିଁ ଘାସ ଅମଳ କରିଥା'ନ୍ତି ।

ପ୍ରଥମ ବା ମୁଖ୍ୟ କଟେଇ ସାଧାରଣତଃ ଅକ୍ଟୋବର ମାସରେ କରାଯାଇଥାଏ । କଟା ଯାଉଥିବା ଘାସ ପୁଣି ବଢ଼ି ଉଠିବା ପରେ ଏପ୍ରିଲ-ମଇ ବେଳକୁ ୨ୟ କଟେଇ କରାଯାଇଥାଏ ।

ଉଭୟ ମଞ୍ଜି ତଥା ମୂଳ (କନ୍ଦ)ରୁ ସବାଇର ବଂଶ ବିସ୍ତାର ହୋଇପାରେ । କୁହାଯାଏ ଯେ ମଞ୍ଜିରୁ ଉପୁଜିଥିବା ଘାସ ଅଧିକ ଭଲ ହୁଏ, ତେବେ ଲୋକେ ସାଧାରଣତଃ କନ୍ଦ ହିଁ ଲଗାଇଥା'ନ୍ତି । ମଞ୍ଜିକୁ

ସିଧାସଳଖ ବୁଣାଯାଏ ନାହିଁ, ଚାରା ପ୍ରସ୍ତୁତ କରି ହିଁ ରୋପି ଦିଆଯାଏ । ତା' କରିବା ଅପେକ୍ଷା ବରଂ ମୂଳରେ ବାହାରିଥିବା ଗଜାଗୁଡ଼ିକୁ ନେଇ ଜମିରେ ରୋପିବା ଅଧିକ ସହଜ ହୋଇଥାଏ । ତା'ଛଡ଼ା, ମଞ୍ଜି ଅଧିକ ପରିମାଣରେ ହୁଏ ନାହିଁ ବୋଲି ଲୋକେ କୁହନ୍ତି । ମଞ୍ଜି ଖରାଦିନେ ଓ ମୂଳ ବର୍ଷାଦିନେ ସଂଗ୍ରହ କରାଯାଇ ବର୍ଷାଋତୁରେ ହିଁ ଚାରା ରୋପଣ କରାଯାଇଥାଏ ।

ସବାଇ ଘାସ ବାଲିଆ ମାଟିରେ ଭଲ ହୁଏ । ଭଲ ବର୍ଷା ପାଇଲେ ଏହା ଅଧିକ ବଢ଼ିଥାଏ ଏବଂ ବର୍ଷା ଅଭାବରେ ଜଳସେଚନର ସୁବିଧା କରିପାରିଲେ ମଧ ସୁଫଳ ମିଳିଥାଏ । ତେବେ ଜଳମଗ୍ନ ଅଞ୍ଚଳ ଏହା ପାଇଁ ଅନୁକୂଳ ନୁହେଁ, ତେଣୁ ଜମିରେ ପାଣି ଜମି ନରହିଲେ ଭଲ ।

୬୦ ସେ.ମିରୁ ୧ ମିଟର ଦୂରତାରେ ୧୫ ସେ.ମି.X୧୫ ସେ.ମି X୧୫ ସେ.ମି.ର ଗାତ କରି ଚାରା ଅଥବା ମୂଳଗଜାର ପତଳା ବିଡ଼ାମାନ ପୋତି ଦିଆଯାଏ । ବିଡ଼ାର ଅନ୍ତତଃ ତିନିଭାଗରୁ ଏକଭାଗ (ଉପର ଅଂଶ) ବାହାରକୁ ରଖାଯାଏ ଏବଂ ଅବଶିଷ୍ଟ ଅଂଶ ପୋତି ହୋଇ ରହେ ।

ଲଗାଯିବାର ପ୍ରାୟ ୨ ବର୍ଷ ପରେ ଘାସ ଅମଳ ଯୋଗ୍ୟ ହୁଏ ଏବଂ ୮/୧୦ ବର୍ଷ ପର୍ଯ୍ୟନ୍ତ ଭଲ ଅମଳ ଦେଇଥାଏ । ତା'ପରେ ପୁରୁଣା ବୁଦାଗୁଡ଼ିକୁ କାଢ଼ିଦେଇ ନୂଆ ଲଗାଇବାକୁ ହୁଏ ।

ଧାନଚାଷର ପଦ୍ଧତି ଭଳି ସବାଇ ଚାଷରେ ମଧ ହଳ ହୋଇଥାଏ ଏବଂ ଅଗଛା ବଛା ଯାଇଥାଏ । ବିଶେଷ ଯତ୍ନ ଅଭାବରେ ସୁଦ୍ଧା ଏ ଘାସ ବଢୁଥିଲେ ମଧ ଯତ୍ନ କଲେ ଅଧିକ ଅମଳକୁ ସୁନିଶ୍ଚିତ କରିହୁଏ । ସେଥିପାଇଁ କେତେକ ଚାଷୀ ଜୁଲାଇ ମାସରେ ଏକର ପ୍ରତି ୧୫ କିଲୋ ୟୁରିଆ ଦେଇ ପୁଣି ଏକ ମାସ ପରେ ତା'ର ପୁନରାବୃତ୍ତି କରିଥା'ନ୍ତି । ୟୁରିଆ ଦିଆଯିବା ପରେ ପରବର୍ଷ ଗ୍ରୀଷ୍ମଋତୁରେ ଖତ ମଧ ଦିଆଯାଏ କାରଣ ତା' ନହେଲେ ମାଟି ଶକ୍ତ ହୋଇଯିବାର ଭୟ ଥାଏ ।

ଯଦି ଜୁନ୍ ଠାରୁ ମଇ ପର୍ଯ୍ୟନ୍ତ ଗୋଟିଏ ଅମଳ ବର୍ଷ ବୋଲି ଆମେ ଧରିବା, ତା'ହେଲେ ପ୍ରଥମ ଅମଳ ବର୍ଷର ୨ୟ କଟେଇ ପରେ ୨ୟ ଅମଳ ବର୍ଷର ପ୍ରଥମ କଟେଇର ଅମଳ ଅପେକ୍ଷାକୃତ କମ୍ ହୋଇପାରେ । ବର୍ଷା ତଥା ଯତ୍ନ ଅଭାବରେ ଏଇଭଳି ଭାବରେ ଉତ୍ପାଦନ କ୍ରମଶଃ କମିଯିବାର ସମ୍ଭାବନା ଥିବାରୁ ଚାଷୀମାନେ ସାର ଆଦି ଦେବାର ବନ୍ଦୋବସ୍ତ କରିଥା'ନ୍ତି । ତା'ଛଡ଼ା, ଗାଈଗୋରୁ ଯେପରି କ୍ଷେତର ସବାଇ ଫସଲ ନଖା'ନ୍ତି, ସେଥିପାଇଁ ମଧ ସତର୍କ ରହିବାକୁ ପଡ଼େ । ପରିଶ୍ରମର ଫଳ ସ୍ୱରୂପ ଘାସ ଯଦି ଭଲହୁଏ, ତା'ହେଲେ ଏକର ପ୍ରତି ପ୍ରାୟ ୫୦/୬୦ ମହଣ (ଏକ ମହଣ = ପ୍ରାୟ ୪୦ କେଜି) କଞ୍ଚା ଘାସ ଆମଦାନୀ ହୋଇଥାଏ (ଗୋଟିଏ କଟେଇରେ) । ସାଧାରଣତଃ ପ୍ରଥମ କଟେଇରୁ ହିଁ ଅଧିକ ଅମଳ ମିଳିଥାଏ ।

ଗୋଟିଏ ଘାସ ଏତେ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା କାହିଁକି ? ତା'ର ଉତ୍ତର ହେଉଛି : କାଗଜ ତିଆରି ପାଇଁ ଆବଶ୍ୟକ କଞ୍ଚାମାଲ ଭିତରେ ବାଉଁଶର ସ୍ଥାନ ପ୍ରଥମ ହେଲେ ସବାଇର ସ୍ଥାନ ଦ୍ୱିତୀୟ ।

ତା'ଛଡ଼ା ଦଉଡ଼ି ଏବଂ ମସିଣା ଆଦି ମଧ୍ୟ ଏ ଘାସରୁ ତିଆରି ହୋଇଥାଏ । ଏସବୁ ବ୍ୟତୀତ, ଏହା ଏକ ଗୋଖାଦ୍ୟ ମଧ୍ୟ ଯଦିଓ ଅର୍ଥକାରୀ ଫସଲ ହୋଇଥିବା ହେତୁ ଏଇ ଶେଷ ଉପଯୋଗିତା (ଗୋ-ଖାଦ୍ୟ)ଟିକୁ ଲୋକେ ପ୍ରାଥମିକତା ଦେଇନଥା'ନ୍ତି ।

ସବାଇ ଘାସ ଓ ସେଥିରୁ ପ୍ରସ୍ତୁତ ଜିନିଷଗୁଡ଼ିକର ଉଚିତ ମୂଲ୍ୟ ପାଇବା ଲାଗି କେତେକ ବିଷୟ ପ୍ରତି ଧ୍ୟାନ ରଖିବାକୁ ହୁଏ । ଘାସ (ସବାଇ)ରୁ ଅଗଛା ବାଛି ଦେଇ ଶୁଖାଇବା ପରେ ହିଁ ତା'କୁ ବିକ୍ରି କରାଯାଇଥାଏ । ଠିକ୍ ସମୟରେ ନ କାଟିଲେ ଅଗ ମରିଯାଇ ଘାସର ମୂଲ୍ୟ ହ୍ରାସପାଏ । ତା' ପରେ, ଶୁଖାଇବା ସମୟରେ ଯଦି ବର୍ଷାରେ ଭିଜିଯାଏ, ତା'ହେଲେ ବେରଙ୍ଗ ହୋଇଯାଇ ମଧ୍ୟ ତା'ର ମୂଲ୍ୟ ହ୍ରାସ ଘଟେ । ଶୁଖିଲା ଘାସ ଯେତେ ସବୁଜ ଥିବ, ତା'ର ଚାହିଦା ସେତେ ଭଲ ହୁଏ । ତେବେ ବର୍ଷେ ୨ ବର୍ଷ ବିକ୍ରି ନହୋଇ ପଡ଼ିରହିଥିବା ଶୁଖିଲା ଘାସ ମଧ୍ୟ କିଛିଟା ଲାଲ ରଙ୍ଗ ଧରିପାରେ ।

ଶୁଖିଲା ଘାସରେ ଉଇ ଲାଗିପାରନ୍ତି, ତେଣୁ ଚଟ୍ଟାଣରେ ଉଇନାଶକ ରସାୟନ ଛିଞ୍ଚି ତା' ଉପରେ ଘାସ ରଖିବାର ବ୍ୟବସ୍ଥା ମଧ୍ୟ କେହି କେହି କରିଥା'ନ୍ତି ।

ମୟୂରଭଞ୍ଜର ଚାଷୀମାନେ ସବାଇକୁ ହୁଏତ ସିଧାସଳଖ କିମ୍ବା ଦଉଡ଼ି କରି ବିକ୍ରି କରିଥା'ନ୍ତି । ଶୁଖିବା ପରେ କଞ୍ଚା ଘାସର ଓଜନ ପ୍ରାୟ ଅଧା ହୋଇଯାଏ ଏବଂ ଖୁଚୁରା (କେଜି ପ୍ରତି ପ୍ରାୟ ୫ ଟଙ୍କା) କିମ୍ବା ମହଣ (ପ୍ରାୟ ୨୦୦ ଟଙ୍କା) ଅଥବା କ୍ୱିଣ୍ଟାଲ ଦରରେ ବିକ୍ରି ହୋଇଥାଏ ।

ଦଉଡ଼ି ତିଆରି କରିବାକୁ ହେଲେ ଶୁଖିଲା ସବାଇ ଘାସକୁ ପ୍ରଥମେ ଭିଜାଇ ନରମ କରିବା ପରେ ବଳିବାକୁ ହୁଏ । ବଳାଯାଇଥିବା ଦଉଡ଼ିକୁ ଶୁଖାଇବା ପରେ ପୁଣି ଥରେ ଭିଜାଇ 'ପାଗ' ଦିଆଯାଏ; ଅର୍ଥାତ୍ ଦଉଡ଼ି ଯେପରି ଶକ୍ତ ହେବ, ସହଜରେ ନ ଖୋଲିବ ଏବଂ ସିଧା ରଖିଲେ ମୋଡ଼ି ନହେବ, ସେଥିପାଇଁ ଗୋଟିଏ ସରଳ ଯନ୍ତ୍ରରେ ଲଗାଇ ଯନ୍ତ୍ରଟି ଚଳାଇବାକୁ ହୁଏ (ଫଟୋଚିତ୍ର ଦ୍ରଷ୍ଟବ୍ୟ) । ତା'ପରେ ସେଇ ଦଉଡ଼ିକୁ କାଢ଼ି ଲମ୍ବ ଭାବରେ ଶୁଖାଯାଏ ଏବଂ ଗଛ ଡାଳରେ ଘଷି ଘଷି ତା'କୁ ମସୃଣ କରାଯାଏ ଯେପରି କି ହାତରେ ଧରିଲେ ଫୋଡ଼ି ନହେବ ।

ଏକ କ୍ୱିଣ୍ଟାଲ ଦଉଡ଼ି ତିଆରି ପାଇଁ ପ୍ରାୟ ଦେଢ଼ କ୍ୱିଣ୍ଟାଲ ଶୁଖିଲା ସବାଇ ଦରକାର ହୁଏ । ସରୁ ଦଉଡ଼ି କେଜି ପ୍ରତି ପ୍ରାୟ ୧୫ ଟଙ୍କା ଏବଂ ମୋଟା ଦଉଡ଼ି ପ୍ରାୟ ୧୧ ଟଙ୍କା ଦରରେ ବିକ୍ରି ହୋଇଥାଏ । ଏଇ ଦଉଡ଼ି ଖଟ ବୁଣିବା ତଥା ସୌଖୀନ ଆସବାବ ପତ୍ର (furniture) ତିଆରି ଆଦିରେ ବ୍ୟବହୃତ ହୁଏ ।

ସବୁ ଚାଷୀ ନିଜେ ଦଉଡ଼ି ତିଆରି କରିନଥାନ୍ତି । ଅନେକ ଲୋକ ନିଜେ ଚାଷ ନକରି ଅନ୍ୟଠାରୁ ସବାଇ ଘାସ କିଣି ଦଉଡ଼ି ତିଆରି କରନ୍ତି । କାରଣ ଏଥିରେ ସେମାନଙ୍କର ସନ୍ତୋଷଜନକ ରୋଜଗାର ହୋଇଥାଏ ଯେହେତୁ ଯେତିକି ଦରରେ ଘାସ କିଣାଯାଇଥାଏ, ଦଉଡ଼ିରୁ ତା'ର ପ୍ରାୟ ୨.୫ ଗୁଣ ବା ଅଧିକ ମୂଲ୍ୟ ମିଳିଥାଏ । ଦଉଡ଼ି ତିଆରି ପାଇଁ ୩/୪ ଦିନ କିମ୍ବା ଅଧିକ ସମୟ ଲାଗିପାରେ । ଅନେକେ ନିଜର

ଅବସର ସମୟରେ ହିଁ ଏଥିରେ ହାତ ଦେଇଥା'ନ୍ତି, ତେଣୁ ସେମାନଙ୍କୁ ବୋଧ ହୋଇଥାଏ ଯେପରିକି ନଗଣ୍ୟ ପରିଶ୍ରମରେ ହିଁ କିଛି ଉଲ୍ଲେଖନୀୟ ରୋଜଗାର ହୋଇଯାଉଛି ।

ଘାସ ଅମଳ ବେଳେ ଅନେକ ଗରିବ ଲୋକ ମୂଲ ଲାଗିଥା'ନ୍ତି । ଏମାନେ ଦୁଇ ପ୍ରକାରେ ମଜୁରି ନେଇଥା'ନ୍ତି, ଯଥା :

- ଘାସ କାଟିବେ ଏବଂ ବଛାବଛି କରି ଶୁଖାଇବା ପରେ ଆଣି ଜମା ଦେବେ । ଏଥିରେ ମହଣ (ଶୁଖିଲା) ପ୍ରତି ପ୍ରାୟ ୪୦ ଟଙ୍କା ମିଳିଥାଏ । ବର୍ଷା ନହେଲେ କାଟିବା ପରଦିନ ହିଁ ଘାସ ଜମା ଦେଇ ଦିଆଯାଏ ।[୧୪]
- ଘାସ କାଟିବେ, ବାଛିବେ ଓ ଶୁଖାଇବେ (ସକାଳ ପ୍ରାୟ ୯ ବା ୯.୩୦ରୁ ଅପରାହ୍ନ ପ୍ରାୟ ୩.୩୦ ପର୍ଯ୍ୟନ୍ତ) ଏବଂ ଏ ବାବଦରେ ମଜୁରି ପାଇବେ (ଦୈନିକ) ପୁରୁଷ ଟ୫୦ଙ୍କା ଏବଂ ମହିଳା ଟ୩୫ଙ୍କା ।

ମୟୁରଭଞ୍ଜ ଜିଲ୍ଲାରେ ଅନେକ ଲୋକ ଭଲ ଜମିକୁ ଧାନ ଚାଷ ପାଇଁ ରଖି ଜବରଦଖଲ କିମ୍ବା ଅନୁର୍ବର ଜମିରେ ହିଁ ସବାଇ ଚାଷ କରିଥା'ନ୍ତି । କୋଷ୍ଟା ପରି କେତେକ ଅଞ୍ଚଳରେ ଲୋକେ ନିଜର କୌଳିକ ପ୍ରଥା ଛାଡ଼ି, ଏପରିକି ଧାନ ଚାଷ ଉପରେ ବି ଗୁରୁତ୍ୱ ନଦେଇ ବରଂ ସବାଇ ଚାଷରେ ଲାଗିଛନ୍ତି କାରଣ କୌଳିକ ପ୍ରଥା ଆଉ ନିର୍ଭରଯୋଗ୍ୟ ହେଲା ନାହିଁ (ରୋଜଗାର ଦୃଷ୍ଟିରୁ) ଏବଂ ଧାନର ମଧ ଉପଯୁକ୍ତ ମୂଲ୍ୟ ମିଳିଲା ନାହିଁ । ଏସବୁ ସତ୍ତ୍ୱେ ଜିଲ୍ଲାର ଏକ ବଡ଼ ଭାଗରେ ସବାଇ ଚାଷ ଦେଖାଯାଏ ନାହିଁ । କାରଣ, ହୁଏତ ଲୋକଙ୍କର ସେଥିରେ ଆଗ୍ରହ ନାହିଁ କିମ୍ବା ଆଗ୍ରହ ଥିଲେ ବି ଚାଷ ପାଇଁ ଜମି ନାହିଁ ।[୧୪(କ)]

*ସବାଇ ବନାମ ଧାନ*

*ଏକର ପ୍ରତି ପ୍ରାୟ ୧୦ କ୍ୱିଣ୍ଟାଲ ସବାଇ (ଶୁଖିଲା) ଅମଳ କଲେ ପ୍ରାୟ ୫୦୦୦ ଟଙ୍କା ମିଳିବ, ଅପର ପକ୍ଷରେ ସେଇ ପରିମାଣର ଧାନ ଅମଳ କଲେ ପ୍ରାୟ ୪୦୦୦ ଟଙ୍କା ମିଳିବ । ଏଇ ଆନୁମାନିକ ହିସାବ ସହିତ ଧାନଚାଷରେ କରାଯାଉଥିବା ଅନ୍ୟାନ୍ୟ ଖର୍ଚ୍ଚ ଯଦି ଯୋଡ଼ି ଦିଆଯାଏ, ତା'ହେଲେ ସବାଇ ଚାଷ ଧାନ ଚାଷ ଅପେକ୍ଷା ଅଧିକ ଲାଭଜନକ ବୋଧ ହୋଇଥାଏ । କିନ୍ତୁ ଯେଉଁମାନେ କେବଳ ନିଜ ଘରେ ବ୍ୟବହାର କରିବା ପାଇଁ ଧାନଚାଷ କରନ୍ତି, ସେମାନଙ୍କ ପାଇଁ ସବାଇରୁ ମିଳୁଥିବା ଲାଭ ତୁଳନାରେ ଚାଉଳ ଉତ୍ପାଦନରେ ଆତ୍ମନିର୍ଭରଶୀଳ ହେବା ବି ଅନେକ ଗୁରୁତ୍ୱ ରଖିଥାଏ ।*

---

୧୪. ସାଧାରଣତଃ ଦୁଇ ଖରା (ଦିନ) ଶୁଖାଇବାକୁ ପଡ଼ିଥାଏ ।

୧୪(କ). ଓଡ଼ିଶାର ଅନ୍ୟ କେତେକ ଅଞ୍ଚଳରେ ବିକ୍ରି ସୁଯୋଗର ଅଭାବରେ ସବାଇ ଚାଷର ଉଦ୍ୟମ ସଫଳ ହୋଇପାରିନାହିଁ ବୋଲି ଶୁଣିବାକୁ ମିଳେ ।

ଭଲ ଜମିରେ ସବାଇ ଚାଷ କଲେ ଜମିର ଉର୍ବରତା କମିଯାଏ କି ନାହିଁ, ସେ ବିଷୟରେ ମତ ପାର୍ଥକ୍ୟ ଦେଖାଯାଏ । କେତେକଙ୍କ ମତରେ ଏ ପ୍ରକାର ଜମିରେ ଧାନଚାଷ କଲେ ଭଲ ଫସଲ ହୁଏ ନାହିଁ । ଅନ୍ୟ ଏକ ମତ କିନ୍ତୁ ଏହାକୁ ସ୍ୱୀକାର କରେ ନାହିଁ । ଏ ପ୍ରସଙ୍ଗରେ କିନ୍ତୁ ସ୍ମରଣ ରଖାଯିବା ଉଚିତ ଯେ ଭଲ ଧାନ ଜମିରେ ଯେହେତୁ ଅନେକ ସମୟରେ ପାଣି ଜମି ରହିଥାଏ, ସେଥିରେ ସବାଇ ଚାଷ ସଫଳ ହେବାର ସମ୍ଭାବନା କମ୍ ଥାଏ।

ମୟୁରଭଞ୍ଜରେ ସବାଇ ମୁଖ୍ୟତଃ ଏକ କୃଷିଜାତ ଦ୍ରବ୍ୟରେ ପରିଣତ ହୋଇସାରିଥିବା ବେଳେ ସୁନ୍ଦରଗଡ଼ ଜିଲ୍ଲାର କେତେକ ସୀମାନ୍ତବର୍ତ୍ତୀ (ଝାଡ଼ଖଣ୍ଡ ରାଜ୍ୟର ସୀମା) ଗ୍ରାମରେ ଏହା ଏବେ ବି ଏକ ବନଜାତ ଦ୍ରବ୍ୟ ହୋଇ ରହିଛି । ବିଶ୍ରା ବ୍ଲକ୍ ଅନ୍ତର୍ଗତ ଏଭଳି କେତୋଟି ଗାଁ'ର ଅଧିବାସୀମାନେ ନିକଟବର୍ତ୍ତୀ ଝାଡ଼ଖଣ୍ଡ ରାଜ୍ୟର ଜଙ୍ଗଲରୁ ସବାଇ ଘାସ ଆଣିଥା'ନ୍ତି ଓ ଦଉଡ଼ି ତିଆରି କରି ବିକ୍ରି କରନ୍ତି । ସେମାନଙ୍କ କହିବାନୁଯାୟୀ ଜଙ୍ଗଲରେ ଏ ଘାସ ଇତସ୍ତତଃ ଜନ୍ମିଥାଏ ଏବଂ ଅନ୍ୟ ଘାସ ସହିତ ମଧ୍ୟ ମିଶି ରହିଥାଏ । ସେଇ ଘାସକୁ ସେମାନେ ବର୍ଷକୁ ତିନିଥର କାଟି ଆଣନ୍ତି, ଯଥା : ଜୁଲାଇ-ଅଗଷ୍ଟ (ପ୍ରଥମ), ନଭେମ୍ବର-ଡିସେମ୍ବର (ଦ୍ୱିତୀୟ) ଓ ଜାନୁଆରୀ-ଫେବୃଆରୀ (ତୃତୀୟ) । ଏଥି ମଧ୍ୟରୁ ପ୍ରଥମ କଟେଇର ଘାସ ଅଧିକ ବଡ଼ ଏବଂ ଭଲ ଥାଏ, ୨ୟ କଟେଇର ଘାସ ମଧ୍ୟ ଅନେକ ପରିମାଣରେ ସେଇଭଳି ହୋଇଥାଏ; କିନ୍ତୁ ତୃତୀୟ କଟେଇରେ ଘାସ ଏତେ ଭଲ ହୁଏ ନାହିଁ ଏବଂ ଲାଲ ପଡ଼ିଯାଇଥାଏ । ଏକ ତୁଳନାତ୍ମକ ଦୃଷ୍ଟାନ୍ତ ଦେଇ ସେମାନେ କୁହନ୍ତି ଯେ ପ୍ରଥମ କଟେଇର ଘାସରୁ ତିଆରି ଦଉଡ଼ିରେ ଖଟ ବୁଣାଗଲେ ସେ ଖଟ (ଦଉଡ଼ି) ୫ ବର୍ଷରୁ ଅଧିକ କାଳ ଯାଉଥିବା ବେଳେ ତୃତୀୟ କଟେଇର ଘାସ ତିଆରି ଦଉଡ଼ିରେ ସ୍ଥାୟୀତ୍ୱର କାଳ ପ୍ରାୟ ଅଧା ହୋଇଯାଏ ।

କାଳିଆପୋଷ ଗାଁ'ର ଅଭିଜ୍ଞ ସବାଇ ସଂଗ୍ରହକାରୀମାନେ ମତ ଦିଅନ୍ତି ଯେ ଜଙ୍ଗଲୀ-ସବାଇ ଚାଷ-ସବାଇ ଅପେକ୍ଷା ଅଧିକ ଭଲ ଯଦିଓ ଚାଷ-ସବାଇ ହୁଏତ ଜଙ୍ଗଲୀ-ସବାଇ ତୁଳନାରେ ଅଧିକ ଉଚ୍ଚ ହୋଇପାରେ (ଖତ ସାର ପାଇବା ଫଳରେ) । ଚାଷ-ସବାଇ ଶୁଖିବା ପରେ ଜଙ୍ଗଲୀ-ସବାଇ ତୁଳନାରେ ଅପେକ୍ଷାକୃତ ଧଳା ଦେଖାଯାଏ ବୋଲି ସେମାନେ କୁହନ୍ତି । ତେବେ ଏଭଳି ମତାମତର ସତ୍ୟାସତ୍ୟ ଜଣାପଡ଼ିନାହିଁ ।

ଏଇ ସଂଗ୍ରହକାରୀମାନେ ଥରକରେ ଗୋଟିଏ ଭାର ବା ପ୍ରାୟ ୪୦ କେଜି ଘାସ କାଟି ଆଣନ୍ତି । ଦରକାର ପଡ଼ିଲେ ଏଥିପାଇଁ ଜଙ୍ଗଲରେ ସେମାନଙ୍କୁ ଦିନେ ୨ଦିନ ରହିବାକୁ ମଧ୍ୟ ପଡ଼ିଥାଏ । କିନ୍ତୁ ମୟୁରଭଞ୍ଜର ଲୋକଙ୍କ ଭଳି ଏମାନେ ସବାଇ ଘାସ ବା ଦଉଡ଼ିକୁ ସାଧାରଣତଃ ଓଜନରେ ନ ବିକି ବିଡ଼ା ହିସାବରେ ବିକ୍ରି କରିଥା'ନ୍ତି । ପ୍ରାୟ ୩ ଇଞ୍ଚ ବ୍ୟାସ ବିଶିଷ୍ଟ ଘାସବିଡ଼ା ୩ରୁ ୫ ଟଙ୍କାରେ ବିକ୍ରି ହେଉଥିବା ବେଳେ ଏକ ଦଉଡ଼ିବିଡ଼ା (ଆନୁମାନିକ ଓଜନ ପ୍ରାୟ ୨୫୦ ଗ୍ରାମ) ପାଇଁ ସେମାନଙ୍କୁ ୪ରୁ ୫ ଟଙ୍କା ପର୍ଯ୍ୟନ୍ତ ମିଳିଥାଏ ।

***

# ମହୁଲ

୧୮୧୯ ମସିହାରେ ପାରଳାଖେମୁଣ୍ଡି ରାଜ୍ୟରେ ବ୍ରିଟିଶ-ବିରୋଧୀ ଆନ୍ଦୋଳନର ନିଆଁ ଜଳିଉଠିଥିଲା ଯେଉଁଥିରେ ରାଜଭକ୍ତ ଆଦିବାସୀମାନେ ମଧ୍ୟ ଅଂଶ ଗ୍ରହଣ କରିଥିଲେ । କହିବା ବାହୁଲ୍ୟ ଯେ ବିଦ୍ରୋହର କାରଣ ନିଶ୍ଚିତ ରୂପେ ରାଜନୈତିକ ଥିଲା, କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ବିଦ୍ରୋହୀ ଆଦିବାସୀ ନେତା (ବିଶୋୟୀ)ମାନେ 'ବହୁ ଆଡ଼ମ୍ବରେ ଲଘୁକ୍ରିୟା' ଭଳି ଗୋଟିଏ ସାମାନ୍ୟ କଥାକୁ ଏହାର ମୁଖ୍ୟ କାରଣ ବୋଲି ଦର୍ଶାଇଲେ । ବ୍ରିଟିଶ ତଦନ୍ତକାରୀ ଦଳକୁ ସେମାନେ କହିଥିଲେ ଯେ ପାରଳାଖେମୁଣ୍ଡିର ପ୍ରଶାସନ ଦାୟିତ୍ୱରେ ଥିବା ବ୍ରିଟିଶ ପ୍ରତିନିଧି ସେମାନଙ୍କର ମହୁଲ ଗଛଗୁଡ଼ିକ କଟାଇ ଦେଇଛନ୍ତି ଏବଂ ଏହା ହିଁ ସେମାନଙ୍କର ସବୁଠାରୁ ବଡ଼ ଅଭିଯୋଗ । ଏଇ ଅଭିଯୋଗ ସତ୍ୟ ନୁହେଁ ( ? ) ବୋଲି ତଦନ୍ତରୁ ପରେ ଜଣାପଡ଼ିଥିଲା, କିନ୍ତୁ ଏଥିରୁ ବୁଝିହେବ ଯେ ମହୁଲ ଗଛ ଆଦିବାସୀଙ୍କ ଜୀବନ ଓ ସଂସ୍କୃତିରେ କି ଗୁରୁତ୍ୱ ରଖିଆସିଛି । ଏପରିକି ଅଣ-ଆଦିବାସୀ ମହାନ୍ତମାନେ ପ୍ରଥମେ ମହୁଲ ଗଛ ସହିତ ବିବାହ କରିବାର ପରମ୍ପରା ରହିଛି ।

ମହୁଲ (Madhuca indica) ଗଛର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହେଉଛି ତା'ର ଫୁଲ (ମହୁଆ ବା ମହୁଲ)। ଏଥିରେ ରହିଛି ପ୍ରଚୁର ପରିମାଣର ଶର୍କରାଜାତୀୟ ଉପାଦାନ ତଥା ପର୍ଯ୍ୟାପ୍ତ ପରିମାଣରେ ଖାଦ୍ୟସାର (ଭିଟାମିନ) । ତେଣୁ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ ଯେ ଆଦିବାସୀଙ୍କର ଖାଦ୍ୟ ତାଲିକାରେ ମହୁଲ ପ୍ରଥମ ଶ୍ରେଣୀରେ ରହିଛି । ଏହାକୁ ସେମାନେ ବହୁ ପ୍ରକାରେ (ଲଡୁ, ସିଝା, ଭଜା, ଇତ୍ୟାଦି) ଖାଇଥା'ନ୍ତି । ତେବେ ଅତ୍ୟଧିକ ମାତ୍ରାରେ ମହୁଲ ଖାଇଲେ ବାନ୍ତି ହେବା ସହିତ ମସ୍ତିଷ୍କ ଉପରେ ମଧ୍ୟ ଚାପ ପଡ଼େ ।

ମହୁଲ ବଳକାରକ ହେବା ସହିତ କଫ, କାଶ ତଥା ଶ୍ୱସନୀ-ପ୍ରଦାହ (ବ୍ରୋଙ୍କାଇଟିସ) ଆଦି ରୋଗର ଉପଶମ ପାଇଁ ସାହାଯ୍ୟ କରେ । ଏଥିରୁ ଯେଉଁ ମଦ ତିଆରି ହୁଏ, ତାହା ଖୁବ୍ ନିଶା କରାଏ; କିନ୍ତୁ ଅତ୍ୟଧିକ ଝାଡ଼ା ବା ନାଳରକ୍ତ ଝାଡ଼ାରେ ଏହା ଉପକାରୀ । ଏସବୁ ଉପଯୋଗିତା ବ୍ୟତୀତ ମହୁଲରୁ ଭିନିଗାର, ଗୁଡ଼ ଓ ଜାମ୍ ଇତ୍ୟାଦି ମଧ୍ୟ ତିଆରି ହୋଇଥାଏ ଏବଂ ରାଷ୍ଟ୍ରସ୍ଥିତ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ Society for Rural Industrialisation ପ୍ରକିୟାକରଣ ଦ୍ୱାରା ମହୁଲର କିସ୍‌ମିସ୍ ମଧ୍ୟ ତିଆରି କରିଛନ୍ତି ।

ମହୁଲ ସଂଗ୍ରହ ପାଇଁ ଲୋକେ ଯେଉଁ ପାରମ୍ପରିକ ପଦ୍ଧତି ଅନୁସରଣ କରିଆସୁଛନ୍ତି, ତାହା ବିଭିନ୍ନ ଦୃଷ୍ଟିରୁ ପ୍ରଶଂସନୀୟ । ଗଛ ତଳ ସଫା କରି ଏମାନେ ଅପେକ୍ଷା କରିରହନ୍ତି କେତେବେଳେ ଫୁଲ ଗଛରୁ ଝଡ଼ିବ। ରାତି ପ୍ରାୟ ୪ଟାରୁ ସକାଳ ୧୦ଟା ମଧ୍ୟରେ ମହୁଲ ଝଡ଼ିଥାଏ। ନିଜେ କାହିଁକି ଫୁଲ ତୋଳି

ଆଣନ୍ତି ନାହିଁ, ଏ ପ୍ରଶ୍ନର ଉତ୍ତରରେ ସୁନ୍ଦରଗଡ଼ ଜିଲ୍ଲାର ଯଥାକ୍ରମେ ତୁନ୍‌ମୁରା ତଥା ଗମାରଡ଼ିହି ଗାଁ'ର ଅଧିବାସୀ ସର୍ବଶ୍ରୀ ଜଟିଆ କୁଜୁର ଏବଂ ଉଡ଼ିଆ କିଶାନ ଆମକୁ ଯାହା କହିଥିଲେ, ତାହା ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ସେମାନଙ୍କ ମତରେ ଫୁଲ ହେବା ସମୟ ହେଉଛି ମହୁଲ ଗଛର ଗର୍ଭାବସ୍ଥା ଏବଂ ଗର୍ଭରୁ ଶିଶୁ ଯେପରି ସମୟ ହେଲେ ଭୂମିଷ୍ଠ ହୁଏ, ସେଇଭଳି ମହୁଲ ଗଛର ଫୁଲ ମଧ ତା'ର ସମୟ ହେଲେ ତଳେ ପଡ଼ିବ ଏବଂ ଆମକୁ ସେ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ଏଇ ଭାବନାଟି ବୈଜ୍ଞାନିକ ଦୃଷ୍ଟିକୋଣରୁ କେତେଦୂର ଉପଯୋଗୀ, ସେକଥା ନିମ୍ନ ବିଶ୍ଲେଷଣରୁ ଜଣାପଡିବ :

- ମହୁଲର ଶର୍କରା ପରିମାଣ ସବୁବେଳେ ସମାନ ନଥାଏ । ମୋଟ ଶର୍କରା ପରିମାଣ କେବଳ ସେତିକି ବେଳେ ସର୍ବାଧିକ ରହେ ଯେତେବେଳେ କି ମହୁଲ ପାକଳ ହୋଇ ତଳେ ପଡ଼ିବାକୁ ଯାଉଥାଏ। ତେଣୁ ନିଜକୁ ନିଜେ ତଳେ ପଡୁଥିବା ଫୁଲରେ ହିଁ ମହୁଲ ସ୍ୱଗୁଣରେ ପରିପୂର୍ଣ୍ଣ ହୋଇ ରହିଥାଏ ।

- ଫୁଲ ଛିଣ୍ଡାଇ ଆଣିବା ଦ୍ୱାରା ଗଛ ଉପରେ କୁପ୍ରଭାବ ପଡ଼ିପାରେ, ବିଶେଷତଃ ଫଳ ବା ଟୋଲର ଉତ୍ପାଦନ ଉପରେ ପ୍ରତିକୂଳ ପ୍ରଭାବ ପଡ଼ିପାରେ ।

ଖରାରେ ଭଲ କରି ନ ଶୁଖାଇଲେ ମହୁଲ ଶୀଘ୍ର ନଷ୍ଟ ହୋଇଯାଏ । ଏଥିରେ ଥିବା ଜଳୀୟ ଅଂଶ ତଥା ଶର୍କରା ଯୋଗୁଁ ଫୁଲ କଳା ପଡ଼ିଯିବା ସହିତ ସେଥିରେ ପୋକ ମଧ ଲାଗିଯା'ନ୍ତି । ପୋକ ନ ଲାଗିଥିଲେ ବି କଳା ପଡ଼ିଥିବା ମହୁଲର ଦର ଶତକଡ଼ା ୩୦ କିମ୍ବା ଅଧିକ କମିଯାଇପାରେ ।

ଶୁଖାଇବା ବେଳେ ଫୁଲଗୁଡ଼ିକୁ ପରିସ୍ରର ଠାରୁ ଅଲଗା ରଖିଲେ ଭଲ, ତା'ନହେଲେ ବି ଫୁଲ କଳା ପଡ଼ିଯାଇପାରେ । ଭଲ ଭାବେ ଶୁଖିଥିବା ଫୁଲର ରଙ୍ଗ ଲାଲ ହୋଇଥାଏ ଏବଂ ଏହାକୁ ପାପୁଲିରେ ରଖି ହାତ ମୁଠା କଲେ 'ମେଞ୍ଚା ମେଞ୍ଚା' ହୁଏ ନାହିଁ । ତେବେ ମେଘୁଆ ପାଗ, ବର୍ଷା, ପବନ ଓ ଅତ୍ୟଧିକ ଖରା ମହୁଲ ପାଇଁ କ୍ଷତିକାରକ ହୋଇପାରେ ।

କିନ୍ତୁ କେବଳ ଶୁଖାଇବା ଦ୍ୱାରା ମହୁଲର ଦୀର୍ଘକାଳୀନ ସଂରକ୍ଷଣ ସମ୍ଭବ ହେବ ନାହିଁ ବୋଲି ଜାଣି କେତେକ ଅଞ୍ଚଳରେ ଲୋକମାନେ ଆଉ ଏକ ବ୍ୟବସ୍ଥା କରୁଥିଲେ । ସେମାନେ ବୁଝିଥିଲେ ଯେ ବାୟୁ ସଂସ୍ପର୍ଶରେ ଆସିଲେ (ସେଥିରେ ଥିବା ଜଳୀୟ ବାଷ୍ପ ତଥା ଅନ୍ୟ କାରଣରୁ) ଶୁଖିଲା ମହୁଲ ବି କ୍ରମେ ଖରାପ ହୋଇଯାଇପାରେ । ତେଣୁ ଏକ ବାୟୁରୁଦ୍ଧ (air-tight) ସଂରକ୍ଷଣର ବ୍ୟବସ୍ଥା କରବାକୁ ଯାଇ ସେମାନେ ପାଳ (ନଡ଼ା) ଦଉଡ଼ି ଏବଂ ନଡ଼ା ଦ୍ୱାରା ଗୋଟିଏ ନମନୀୟ ଆଧାର ବା ପୁଟୁଳା ତିଆରି କରୁଥିଲେ । ଏ ପ୍ରକାର ଆଧାରକୁ କୁହନ୍ତି 'ପୁଡୁଗ' ବା ଓଳିଆ (ଫଟୋ ଚିତ୍ର ଦ୍ରଷ୍ଟବ୍ୟ) । ଏହା ଭିତରେ ମହୁଲକୁ ଖୁନ୍ଦି ଖୁନ୍ଦି (ଠେସି ଠେସି) ଭର୍ତ୍ତି କରାଯାଇଥାଏ । କେହି କେହି 'ପୁଡୁଗ' ଚାରିପାଖରେ ଜାମୁଡାଳ, କୁସୁମଡାଳ ଓ

ସୁନାରିତାଳ ମଧ ଖୋସି ଦିଅନ୍ତି । ଏ ପ୍ରକାରେ ରଖିଲେ ଶୁଖିଲା ମହୁଲ ପ୍ରାୟ ଦୁଇ ବର୍ଷ ପର୍ଯ୍ୟନ୍ତ ଭଲ ରହିପାରିବାର ସମ୍ଭାବନା ଥାଏ ।

ମହୁଲ ଫଳର ମଞ୍ଜିକୁ 'ଟୋଲ' କୁହନ୍ତି । ଫଳର ଖୋଳପାକୁ ପୋଡ଼ି ଧୂଆଁ ଦେଲେ ମଶା, କୀଟପତଙ୍ଗ, ମୂଷା ଆଦି ଆସନ୍ତି ନାହିଁ ବୋଲି କୁହାଯାଏ; ତେବେ ଟୋଲ ହେଉଛି ଏଇ ଫଳର ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ଅଂଶ କାରଣ ଏଥିରୁ ତେଲ ତିଆରି ହୁଏ ।

ମହୁଲ ପରି ଟୋଲ ମଧ ନିଜକୁ ନିଜେ ତଳେ ପଡ଼ିବା ପରେ ସଂଗୃହୀତ ହୋଇଥାଏ (ଫଳ) । ଯଦି ଲୋକେ ଦେଖନ୍ତି ଯେ ପ୍ରତିଦିନ ଏକ ବା ଦୁଇ କେଜି ଫଳ ଖସି ପଡୁଛି, ତା'ହେଲେ ଗଛରେ ଥିବା ଫଳ ପାକଳ ହୋଇଗଲାଣି ବୁଝି ସେମାନେ ନିଜେ ବି ତୋଳିବାର ବ୍ୟବସ୍ଥା କରିଥା'ନ୍ତି । ଫଳ/ମଞ୍ଜି ସଂଗ୍ରହ ପାଇଁ ପ୍ରକୃତି ବହୁତ ବେଶି ସମୟ ଦିଏ ନାହିଁ, ତେଣୁ ଠିକ୍ ସମୟରେ ସଂଗ୍ରହ କରାନଗଲେ ବର୍ଷା ଋତୁରେ ଅନେକ କିଛି ନଷ୍ଟ ହୋଇଯାଏ ।

ଫଳକୁ ଚିପିଲେ ମଞ୍ଜି ବାହାରି ଆସେ ଏବଂ ତା'ପରେ ତାକୁ ଭଲଭାବେ ଶୁଖାଇ ଦିଆଯାଇ ଖୋଳପା ଛଡ଼ାଇ ଦିଆଯାଏ । ପାକଳ ମଞ୍ଜି ହିଁ ତେଲ କରିବା ପାଇଁ ଉପଯୁକ୍ତ, ତେଣୁ ପାଚିଲା ଫଳରୁ ହିଁ ଏହା ସଂଗ୍ରହ କରାଯାଏ । ପାକଳ ଟୋଲରୁ ଖୋଳପା ଛଡ଼ାଇବା ସମୟରେ ଜାଲି ଭଳି ଆବରଣଟିଏ ସ୍ପଷ୍ଟ ଜଣାଯାଏ । ତା'ଛଡ଼ା ଏଭଳି ଟୋଲକୁ ଦୁଇଫାଳ କଲେ ଭିତର ଅଂଶ ଲାଲ ଦେଖାଯାଏ । ଶୁଖିଲା ଟୋଲକୁ ଗରମ ପାଣିରେ ପକାଇ ପୁଣି ଶୁଖାଇ ଦିଆଗଲେ ତାହା ଅଧିକ କାଳ ସୁରକ୍ଷିତ ରହିପାରେ ।

ଟୋଲ ତେଲର ଗୁଣ ତଥା ପରିମାଣ ନିମ୍ନ ବିଷୟଗୁଡ଼ିକ ଉପରେ ନିର୍ଭର କରେ :

- କିଭଳି ଭାବେ ଓ କେତେଦିନ[୧୫] ଟୋଲକୁ ସାଇତି ରଖାଯାଇଥିଲା, ଏବଂ
- ତେଲ ନିଷ୍କାସନର ପଦ୍ଧତି ବା ଯନ୍ତ୍ର ।

ଉଦାହରଣ ସ୍ୱରୂପ, ଭଲ ଭାବେ ଶୁଖିନଥିବା ଟୋଲର ତେଲ ଉତ୍କୃଷ୍ଟ ମାନର ହୁଏ ନାହିଁ କାରଣ ସେଥିରେ ଜଳୀୟ ଅଂଶ ଅଧିକ ଥାଏ । ସଦ୍ୟ ନିଷ୍କାସିତ ଉତ୍କୃଷ୍ଟ ଟୋଲ ତେଲର ରଙ୍ଗ ହଳଦିଆ ଥାଏ ଏବଂ ସ୍ୱାଦ ମଧ ଖରାପ ଲାଗେ ନାହିଁ । ପରମ୍ପରା କ୍ରମେ ଏହି ତେଲ ବ୍ୟବହାର କରିଆସୁଥିବା ଲୋକେ କହନ୍ତି ଯେ ଏଭଳି ତେଲ ସ୍ୱାସ୍ଥ୍ୟ ପାଇଁ ହିତକର ।[୧୬]

---

୧୫. କୁହାଯାଏ ଯେ ୬/୮ ମାସରୁ ଅଧିକ କାଳ ରଖାଯାଇଥିବା ଟୋଲରୁ ମିଳୁଥିବା ତେଲର ଗୁଣାତ୍ମକ ମାନ କମିଯିବାର ସମ୍ଭାବନା ରହେ ।

୧୬. ତେବେ ଚର୍ବିଭାଗ ଯଥେଷ୍ଟ ଥିବାରୁ କେତେକଙ୍କ ପାଇଁ ଏହା ଅହିତକର ବି ହୋଇପାରେ ।

ତିନି ପ୍ରକାର ଉପାୟରେ ଲୋକେ ଟୋଲ ତେଲ ଆଦାୟ କରିଥା'ନ୍ତି :

- ଘଣା (ଆଦାୟ ପ୍ରାୟ ୨୫/୩୦%)
- ତେଲକଳ (ଆଦାୟ ପ୍ରାୟ ୩୪/୩୭%)
- ଜତଗଣ୍ଡି ଯନ୍ତ୍ର (ଆଦାୟ ପ୍ରାୟ ୨୦%) ।

ତେଲକଳ (ମେସିନ ଚାଳିତ)ରେ ଟୋଲ ଦେଇ ତେଲ ଆଣିବା ବର୍ତ୍ତମାନ ଗ୍ରାମାଞ୍ଚଳଗୁଡ଼ିକରେ କ୍ରମଶଃ ଅଧିକ ଦେଖାଯାଉଛି । ଏହି କଳଗୁଡ଼ିକ କେତେକ ସ୍ଥାନରେ ପେଡ଼ିବା ଖର୍ଚ୍ଚ ନିଅନ୍ତି ନାହିଁ, କେବଳ ପିଡ଼ିଆ ରଖିଦିଅନ୍ତି । ଅନ୍ୟ କେତେକ ସ୍ଥାନରେ କେଜି ପ୍ରତି ଏକ ଟଙ୍କା ହାରରେ ପେଡ଼ିବା ଖର୍ଚ୍ଚ ନେଇ ତେଲ ଓ ପିଡ଼ିଆ ଉଭୟ ଦେଇଥା'ନ୍ତି । କୁହାଯାଏ ଯେ ଦ୍ୱିତୀୟ ବ୍ୟବସ୍ଥାଟି ହିଁ ସଂଗ୍ରହକାରୀ ପାଇଁ ଲାଭଜନକ କାରଣ ପିଡ଼ିଆର ଦର ଦୁଇରୁ ପାଞ୍ଚଟଙ୍କା ପର୍ଯ୍ୟନ୍ତ (ପ୍ରତି କେଜି) ହୋଇଥାଏ ଏବଂ ଏକ କେଜି ମଞ୍ଜିରୁ ପ୍ରାୟ ୭୦୦ ଗ୍ରାମ ପର୍ଯ୍ୟନ୍ତ ପିଡ଼ିଆ ବାହାରେ ଯାହାର ମୂଲ୍ୟ ତଦନୁଯାୟୀ ଟ. ୧.୪୦ ରୁ ଟ. ୩.୫୦ ପର୍ଯ୍ୟନ୍ତ ହୋଇପାରେ । ତେଣୁ ପେଡ଼ିବା ଖର୍ଚ୍ଚ ନନେଲେ ବି କଳମାଲିକ ଅଧିକ ଲାଭ ପାଇଥାଏ ।[୧୭] ସବୁଠାରୁ ବଡ଼ କଥା ହେଉଛି କଳରେ ପେଡ଼ା ଯାଉଥିବା ତେଲ ଅଧିକ କାଳ ସ୍ଥାୟୀ ହୁଏ ନାହିଁ, ଅର୍ଥାତ କିଛି ମାସ ପରେ ଦୁର୍ଗନ୍ଧ ହୋଇଥାଏ କାରଣ ପେଡ଼ିବା ପାଇଁ ଟୋଲରେ ଯେଉଁ ପାଣି ଛିଞ୍ଚା ଯାଇଥାଏ, ତା' ଫଳରେ ତେଲର ଜଳୀୟ ଅଂଶ ବଢ଼ିଯାଏ । ତେବେ ଏଭଳି ତେଲକୁ ସଂଗେ ସଂଗେ ଗରମ କରିଦେଲେ ଦୁର୍ଗନ୍ଧ ହେବାର ଭୟ କଟିଯାଏ ।

ଉତ୍କୃଷ୍ଟ ତଥା ଅଧିକ-କାଳ-ସ୍ଥାୟୀ ତେଲ ପାଇବା ପାଇଁ କେତେକ ଅଞ୍ଚଳର ଲୋକେ ଯେଉଁ ଯନ୍ତ୍ର ବ୍ୟବହାର କରୁଥିଲେ, ତାକୁ ମୟୁରଭଞ୍ଜର କୋଷ୍ଠା ଅଞ୍ଚଳରେ 'ଜତଗଣ୍ଡି' ବୋଲି କହିଥା'ନ୍ତି (ଫଟୋଚିତ୍ର

---

୧୭. ଦୁଇ ପ୍ରକାର ପିଡ଼ିଆ ମିଳିଥାଏ : ତେଲଯୁକ୍ତ ଏବଂ ତେଲମୁକ୍ତ (deoiled cake) । ଦେଶୀ ପଦ୍ଧତିରେ ବାହାର କରାଯାଉଥିବା ପିଡ଼ିଆରେ ତଥାପି କିଛି ତେଲ ଅବଶିଷ୍ଟ ଥାଏ କାରଣ ଟୋଲରୁ ସମୁଦାୟ ତେଲ ନିଷ୍କାସନ କରିବା ଏକ ଜଟିଳ ବ୍ୟାପାର । ତେଲଯୁକ୍ତ ପଡ଼ିଆକୁ ସ୍ୱତନ୍ତ୍ର କାରଖାନାରେ ତେଲମୁକ୍ତ କରାଯାଇଥାଏ । ମହୁଲ ପିଡ଼ିଆ, ବିଶେଷତଃ ତେଲମୁକ୍ତ ପିଡ଼ିଆ ବିଷାକ୍ତ ଏବଂ ପୋଖରୀ ଖୋଳିବା ବା ସଫା କରିବା ସମୟରେ ଅଳ୍ପ ପରିମାଣରେ ପ୍ରୟୋଗ କଲେ ସାପ, ବେଙ୍ଗ ଆଦି ମରିଯା'ନ୍ତି । ବର୍ଷା ପୂର୍ବରୁ ଏହି ପ୍ରୟୋଗ କରାଗଲେ ବର୍ଷା ପରେ ପୋଖରୀ ବ୍ୟବହାର ଉପଯୋଗୀ ହୋଇଉଠେ । ମାଛ ମାରିବା ପାଇଁ ମଧ ଏହାକୁ ବ୍ୟବହାର କରାଯାଇଥାଏ ଏବଂ ସେ ମାଛକୁ ଖାଇବାରେ ଲୋକେ କୌଣସି ଅସୁବିଧା ଅନୁଭବ କରିନଥା'ନ୍ତି । ମାଙ୍କଡ଼ସା 'ମୁତିବା'/ କାମୁଡ଼ିବାରେ ମଧ ଏହାକୁ ଔଷଧ ରୂପେ ପ୍ରୟୋଗ କରାଯାଇପାରେ ଏବଂ ଧାନ ଚାଷରେ ଯେତେବେଳେ ଧାନ ଗଛ ଅଗରୁ ଧଳା ପଡ଼ିଯାଇ ପତ୍ର ନଷ୍ଟ ହୋଇଯାଉଥାଏ, କ୍ଷେତରେ ମାଡ଼ୁଥିବା ପାଣି ସହିତ ଏହାକୁ ମିଶାଇ ଦେଲେ ସେ ସମସ୍ୟାର ସମାଧାନ ହୋଇଥାଏ । ତା'ଛଡ଼ା ଜମିରେ ଏହାକୁ ଖତ/ସାର ଭଳି ମଧ ପ୍ରୟୋଗ କରାଯାଇପାରେ ।

ଦ୍ରଷ୍ଟବ୍ୟ) । ଏଥିରେ ପ୍ରଯୁକ୍ତ ହେବା ପୂର୍ବରୁ ଟୋଲକୁ ପ୍ରଥମେ ଢିଙ୍କିରେ ଗୁଣ୍ଡ କରିଦିଆଯାଏ । ଏଇ ଗୁଣ୍ଡକୁ ଗୋଟିଏ ବାଉଁଶିଆ (basket)ରେ ଭର୍ତ୍ତି କରି ପାଣି ଥିବା ହାଣ୍ଡି ଉପରେ କନାଟିଏ ପକାଇ ତା'ଉପରେ ରଖାଯାଏ । ବାଉଁଶିଆ ବା ଝୁଡ଼ିଟିକୁ କଦଳୀ ପତ୍ର ବା ଖଳି ପତ୍ର ଦ୍ୱାରା ଭଲ ଭାବେ ବନ୍ଦ କରି (ବାନ୍ଧି) ଚାରିକଡ଼ରେ ମାଟି ଲିପି ହାଣ୍ଡିର ମୁହଁ ସମେତ ଏପରି ଭାବେ ବନ୍ଦ (ସିଲ୍) କରିଦିଆଯାଏ ଯେପରିକି ବାମ୍ଫ ବାହାରି ଯାଇ ନପାରିବ । ତା'ପରେ ହାଣ୍ଡିକୁ ଗରମ କଲେ ସେଥିରେ ଥିବା ପାଣି ବାଷ୍ପ ହୋଇ ଉପରକୁ ଉଠେ ଏବଂ କେଉଁ ଦିଗରେ ବାହାରିଯିବାର ସୁବିଧା ନ ପାଇବାରୁ ବାଉଁଶିଆ ଭିତରେ ଥିବା ଟୋଲ ଗୁଣ୍ଡକୁ ସିଝାଇ ମଣ୍ଡ ପରି କରିଦିଏ । ସେ ମଣ୍ଡକୁ ନେଇ ଶିଆଳି ପଟରେ ତିଆରି ହୋଇଥିବା ଛୋଟ ଛୋଟ ନମନୀୟ (flexible) ଡାଲା ବା ଝୁଡ଼ିଭିତରେ ଠେସି ଠେସି ଭର୍ତ୍ତି କରାଯାଏ । ଏଇଭଳି କେତୋଟି ମଣ୍ଡ ଭର୍ତ୍ତି ଝୁଡ଼ିକୁ[18] ନେଇ ଦୁଇଟି ଭାରୀ କାଠପଟା ମଝିରେ ରଖି ଉପର ପଟା ଦ୍ୱାରା ଚାପ ପ୍ରୟୋଗ କଲେ ଶିଆଳି ଝୁଡ଼ିରେ ଥିବା ଫାଙ୍କଗୁଡ଼ିକ ଦେଇ ଟୋଲ ତେଲ ଗଡ଼ିଆସେ । କିନ୍ତୁ ଶିଆଳି ଝୁଡ଼ି (ଯାହାକୁ 'ଯୋତା' କୁହନ୍ତି)ରେ ଥିବା ମଣ୍ଡରେ ତଥାପି କିଛି ତେଲ ରହିଯାଏ । ସେଥିପାଇଁ ସେ ମଣ୍ଡକୁ 'ଯୋତା'ରୁ ବାହାର କରି ପୁଣି ଥରେ ବାମ୍ଫ ଦ୍ୱାରା ସିଝାଇ ତେଲ କାଢ଼ିବା ପାଇଁ ନିଆଯାଏ । ଏ ଉପାୟରେ ପ୍ରସ୍ତୁତ ତେଲ ଅଧିକ କାଳ ସ୍ଥାୟୀ ହୁଏ, ତେବେ କେହି କେହି ତେଲକୁ ନେଇ ଗରମ କରିଦିଅନ୍ତି ଯାହାଫଳରେ କି ସେଥିରେ ଥିବା ଜଳୀୟ ଉପାଦାନ (ଯଦି ଥାଏ) ନଷ୍ଟ ହୋଇପାରିବ । ଗରମ ହେଉଥିବା ତେଲର ଉପର ଭାଗରେ ଜମିଥିବା ଫେଣ (ଯଦି ଥାଏ) ଏବଂ ତଳ ଭାଗରେ ଜମିଥିବା ଅନାବଶ୍ୟକ ଅଂଶ (ଟୋଲ ଗୁଣ୍ଡ ଇତ୍ୟାଦି)କୁ ପୃଥକ୍ କରିପାରିଲେ ଟୋଲ ତେଲର ସ୍ଥାୟୀତ୍ୱ ତଥା ଗୁଣାତ୍ମକ ମାନ ବଢ଼ିଥାଏ । ତେବେ ପୂର୍ବରୁ ଯେପରି କୁହାଯାଇଛି, ଜତଗଣ୍ଡି ଯନ୍ତ୍ରରେ ତେଲର ଆଦାୟ ଘଣା ବା ତେଲକଳରେ ହେଉଥିବା ଆଦାୟ ତୁଳନାରେ କମ୍ ହୁଏ ।

ମହୁଲ ଗଛର କାଠ ବେଶ୍ ଶକ୍ତ, କିନ୍ତୁ ତା'ର ମୂଲ୍ୟବାନ ଫୁଲ ଓ ଫଳ ଯୋଗୁଁ ଏ ଗଛକୁ ଲୋକେ ସହଜରେ କାଟନ୍ତି ନାହିଁ । ମହୁଲ ଦର (ଶୁଖିଲା) କେଜି ପ୍ରତି ୩ ବା ୪ ଟଙ୍କାରୁ ଆରମ୍ଭ କରି କେବେ କେବେ ୧୦ ବା ୧୫ ଟଙ୍କା ପର୍ଯ୍ୟନ୍ତ ବି ପହଞ୍ଚିଥାଏ ଏବଂ ଟୋଲ (ଶୁଖିଲା)ର ଦର କେଜି ପ୍ରତି ପ୍ରାୟ ୭ ଟଙ୍କା ହୋଇଥିବା ବେଳେ ଟୋଲ ତେଲର ଖୁଚୁରା ଦର ପ୍ରାୟ ୪୦ ଟଙ୍କା ପର୍ଯ୍ୟନ୍ତ ହୋଇଥାଏ ।

ମହୁଲ ପତ୍ର ପଶୁ ଖାଦ୍ୟ; ଚେର ଘା' ଭଲ କରିବା ପାଇଁ ବ୍ୟବହୃତ ହୁଏ ଏବଂ ଛାଲିରେ ଚମଡ଼ା କଷିବା ତଥା ବିଭିନ୍ନ ଔଷଧୀୟ ଉପଯୋଗିତାର ସାମର୍ଥ୍ୟ ଥାଏ । ଫଳକୁ ସିଧାସଳଖ ଅଥବା ରାନ୍ଧି

---

୧୮. ଏଇଭଳି ଝୁଡ଼ି (ଯାହା ଚାପ ପଡ଼ିଲେ ବି ଭାଙ୍ଗିଯାଏ ନାହିଁ) ପରିବର୍ତ୍ତେ ଆଜିକାଲି ପ୍ଲାଷ୍ଟିକ ଅଖାର ବ୍ୟବହାର ହେଉଥିବାର ମଧ ଦେଖାଯାଉଛି । ଏପରିକି ଜତଗଣ୍ଡି ଯନ୍ତ୍ର ମଧ କ୍ରମେ ଲୋପ ପାଇବାକୁ ବସିଲାଣି ।

ଖୁଆଯାଇଥାଏ ଏବଂ ତେଲ[୧୮(କ)] ଚର୍ମରୋଗ, ବାତ, ମୁଣ୍ଡବିନ୍ଧା ଇତ୍ୟାଦିରେ ଉପକାର କରିବା ସହିତ ଅଭ୍ୟାସଗତ କୋଷ୍ଠବଦ୍ଧତା (constipation) ତଥା ଅର୍ଶ ଭଳି ରୋଗମାନଙ୍କରେ ମଧ କାମରେ ଆସେ (ଖାଇବା ଔଷଧ ରୂପେ) । ତା'ଛଡ଼ା ଟୋଲ ତେଲ ବନସ୍ପତି ତିଆରିରେ ଏବଂ ମଇଳା ଥିଲେ ସାବୁନ ଇତ୍ୟାଦି ତିଆରି ପାଇଁ ମଧ ବ୍ୟବହୃତ ହୋଇଥାଏ ।

ମହୁଲ ଗଛ ମରୁଡ଼ି ବା ତୁଷାରପାତ ସହିପାରେ ଏବଂ ଜଳମଗ୍ନ ଅଞ୍ଚଳରେ ବି ତିଷ୍ଠିପାରେ । ଫୁଲ ମାର୍ଚ୍ଚ-ଏପ୍ରିଲରେ ସଂଗ୍ରହ ହେଉଥିବା ବେଳେ ଫଳ ମଇ-ଜୁନ୍ ସୁଦ୍ଧା ସଂଗ୍ରହ ଉପଯୋଗୀ ହୋଇଥାଏ । ଏ ଗଛ ପ୍ରବଳ ଆଲୋକାଶାୟୀ (stong light-demander), ତେଣୁ ଛାଇ ତଳେ ଭଲ ବଢ଼ିପାରେ ନାହିଁ । ଲପଙ୍ଗା ଅଞ୍ଚଳରେ ଲୋକଙ୍କର ଅଭିଜ୍ଞତାରୁ ଜଣାପଡ଼େ ଯେ ଜଙ୍ଗଲର ମହୁଲ ଗଛ ଅପେକ୍ଷା ବିଲ/ହିଡ଼ରେ ଉଠିଥିବା/ଲଗାଯାଇଥିବା ଗଛ ସାଧାରଣତଃ ଅଧିକ ବଡ଼ ଓ ଝଙ୍କାଳିଆ ହୁଏ ଏବଂ ସେଥିରୁ ଅମଳ ହେଉଥିବା ଫୁଲ/ଫଳର ପରିମାଣ ମଧ ଅଧିକ ହୋଇଥାଏ । ଖୋଲା ଜାଗା ଏବଂ ବିଲରେ ଦିଆଯାଉଥିବା ଖତ ଇତ୍ୟାଦି ଦ୍ୱାରା ଏହା ସମ୍ଭବ ହୋଇଥାଏ ବୋଲି ଅନୁମାନ କରାଯାଇଥାଏ ।

ଶୁଖିଲା, ବାଲିଆ, ପଥୁରିଆ ଓ ନିଗିଡ଼ା ମାଟି ମହୁଲ ଗଛ ଲଗାଇବା ପାଇଁ ଉପଯୁକ୍ତ । ଚାରା ରୋପିବା ଅପେକ୍ଷା ସିଧାସଳଖ ମଞ୍ଜି ପୋତିବା ଅଧିକ ସୁବିଧାଜନକ, ବିଶେଷତଃ ଏଥିପାଇଁ ଯେ ଏହାର (ଚାରା) ଚେର ଖୁବ୍ କୋମଳ ହୋଇଥିବାରୁ ଚାରା କାଢ଼ିବା ବା ଲଗାଇବା ବେଳେ ଅସତର୍କ ହେଲେ ନଷ୍ଟ ହୋଇଯାଇପାରେ ।

ଗଛରୁ ଖସିଥିବା ପାକଳ ମଞ୍ଜିକୁ ଆଣି ଲଗାଇଲେ ଭଲ ଗଜା ହୁଏ । ମଞ୍ଜିର ଅଙ୍କୁରୋଦ୍‌ଗମ୍ ଶକ୍ତି ପ୍ରାୟ ୧ ମାସ, ତେଣୁ ଅଧିକ ଦିନ ରଖାଯାଇଥିବା ମଞ୍ଜିର ଗଜା ହେବା ଶକ୍ତି କମିଯାଏ । ଖୋଲା ତଥା ଛାଇ ଥିବା ସ୍ଥାନରେ ମଞ୍ଜିକୁ ଶୁଖାଇବା ପରେ ଲଗାଇବା ପୂର୍ବରୁ ୨୦ ଘଣ୍ଟା ଥଣ୍ଡା ପାଣିରେ ଭିଜାଇ ରଖିଲେ ଭଲ । ବର୍ଷାଦିନରେ ହିଁ ମଞ୍ଜି ପୋତିବାକୁ ହୁଏ, ତେବେ ନିୟମିତ ବର୍ଷା ନହେଉଥିଲେ ପାଣି ଦେବାକୁ ହୁଏ । ମଞ୍ଜିକୁ ପତଳା ମାଟି ଦେଇ ଘୋଡ଼ାଇ ଦିଆଯାଏ । ଅତ୍ୟଧିକ ଖରା ଯେପରି ଗଜା/ଚାରାର କ୍ଷତି ନକରିବ, ସେଥିପାଇଁ ଦୃଷ୍ଟି ରଖିବା ସହିତ ଗୋରୁଗାଈଙ୍କ କବଳରୁ ମଧ ସୁରକ୍ଷିତ ରଖିବାକୁ ହୋଇଥାଏ । ଭଲ ଗଛ ପାଇବା ପାଇଁ ଏକ ବର୍ଷ ବା ଦୁଇ ବର୍ଷର ଚାରାକୁ ବର୍ଷାଦିନେ ଆଣି ଯତ୍ନର ସହିତ ଗାତରେ ପୋତି ଦିଆଯାଏ । ଗଛ ମୂଳରେ ପାଣି ଜମି ନରହିବା ପାଇଁ ମଧ ଦୃଷ୍ଟି ଦେବା ଦରକାର ହୋଇଥାଏ ।

***

---

୧୮(କ). ଟିଣ ଅପେକ୍ଷା ମାଟି ହାଣ୍ଡିରେ ରଖାଯାଇଥିବା ତେଲ ଅଧିକ କାଳ ସ୍ଥାୟୀ ହୁଏ ବୋଲି କୁହନ୍ତି । ୨/୩ ବର୍ଷର ପୁରୁଣା ତେଲ ହିଁ ଔଷଧ ରୂପେ ବିଶେଷ ବ୍ୟବହାର କରାଯାଇଥାଏ ।

# ଶିଆଳି ଲତା

ରାଜା/ଜମିଦାରମାନଙ୍କର ଶାସନ ସମୟରେ ପ୍ରଜାମାନଙ୍କୁ ବିଭିନ୍ନ ପ୍ରକାର ବେଠି ଖଟିବାକୁ ପଡୁଥିଲା ଏବଂ ଭେଟି ମଧ ଦେବାକୁ ହେଉଥିଲା । ଏସବୁ ଭିତରେ ଅନ୍ତର୍ଭୁକ୍ତ ଥିଲା ଶିଆଳି ଲତା ବା ତା'ର ଦଉଡ଼ି ଯୋଗାଇବା ଯାହାକି ରଥଯାତ୍ରାରେ ରଥ ଟାଣିବା ପାଇଁ ବ୍ୟବହୃତ ହେଉଥିଲା । କଥିତ ଅଛି ଯେ କୃଷ୍ଣ ଯେତେବେଳେ ବଣ ଭିତରେ ଶିଆଳି ଲତାରେ ବସି ଝୁଲୁଥିଲେ, ସେତେବେଳେ ଜରା ଶବର ଭୁଲ ବଶତଃ ତାଙ୍କୁ ଶର ମାରିଥିଲା । ବୋଧହୁଏ ସେଇ କାରଣରୁ ଏହାକୁ କୃଷ୍ଣଙ୍କ ପ୍ରିୟ ତଥା ପବିତ୍ର ବୋଲି ଧାରଣା କରାଯାଉଥିଲା ଏବଂ ଅନ୍ୟ ଅନେକ ଲଇ (ଲତା) ତୁଳନାରେ ଶିଆରି(ଳି) ଲଇ ଅପେକ୍ଷାକୃତ ଦୃଢ଼ ଏବଂ ଲମ୍ବ ହୋଇଥିବାରୁ ରଥ ଟାଣିବାରେ ତାକୁ ବ୍ୟବହାର କରାଯାଉଥିଲା ।

ଆଜି ଶିଆଳି ଲତା ହଜାର ହଜାର ଗରିବଙ୍କ ପାଇଁ ଉପାର୍ଜନର ଏକ ପ୍ରଧାନ ଅବଲମ୍ବନ; ଶିଆଳି ପତ୍ର ବିକ୍ରି କରି ଅଥବା ସେଥିରେ ତିଆରି ଖଲି/ଦନା ବିକ୍ରି କରି ସେମାନେ ଜୀବିକା ନିର୍ବାହ କରିଥା'ନ୍ତି ।

ଏ ଲତା ଖୁବ୍ ଲମ୍ବ ହୋଇପାରେ ଏବଂ ବହୁ ଦୂର ପର୍ଯ୍ୟନ୍ତ ମାଡ଼ିଥାଏ । ପାହାଡ଼ିଆ ଜଙ୍ଗଲରେ ବା ପଥରବଣିଗୁଡ଼ିକରେ (ବିଶେଷତଃ ସୂର୍ଯ୍ୟକିରଣ ପଡୁଥିବା ସ୍ଥାନଗୁଡ଼ିକରେ[୧୯]) ଏହା ବିଶେଷ ଦେଖାଯାଇଥାଏ ବୋଲି ଲୋକେ କୁହନ୍ତି ।

ସାଧାରଣତଃ ଶିଆଳିର ପ୍ରକାରଭେଦ ନାହିଁ (ଅର୍ଥାତ୍, ଏ ଲତା ସର୍ବତ୍ର ଗୋଟିଏ ପ୍ରକାରର ହିଁ ଦେଖାଯାଏ) ବୋଲି ଶୁଣାଯାଇଥାଏ । ତେବେ ଶିମିଳିପାଳ ଅଞ୍ଚଳର ବିଶିପୁର ଗ୍ରାମବାସୀ ତଥା ଅଭିଜ୍ଞ ପତ୍ରତୋଳାଳି ଶ୍ରୀ ଚନ୍ଦ୍ରମଣି ଦାସ (ବାଥୁଡ଼ି)ଙ୍କ ମତରେ ଦୁଇ ପ୍ରକାରର ଶିଆଳି ଦେଖାଯାଏ, ଯଥା :

'ସିମି' ଶିଆଳି : ଫଳ ଅପେକ୍ଷାକୃତ ଛୋଟ ଓ ମଞ୍ଜି ଅଧିକ; ପତ୍ର ଅପେକ୍ଷାକୃତ ଗୋଲ ଏବଂ ବହଳିଆ (ମୋଟା) ।

'କୁଲା' ଶିଆଳି :ଫଳ ଅପେକ୍ଷାକୃତ ବଡ଼ ଓ ମଞ୍ଜି କମ୍; ପତ୍ର ପତଳା ଓ ବଡ଼ ।

ଶ୍ରୀ ଦାସଙ୍କର ଉପରୋକ୍ତ ପ୍ରକାରଭେଦ କେତେଦୂର ଠିକ୍, ସେ ବିଷୟ ନିଶ୍ଚିତ ହୋଇପାରିନାହିଁ । ତେବେ 'ଉଦ୍ଭିଦ ପରିଚୟ' ନାମକ ବହିରେ ଦେଖାଯାଏ ଯେ ଖଲି ଉପଯୋଗୀ ପତ୍ର ମିଳୁଥିବା ଶିଆଳି ଲତା (Bauhinia vahlii) ବ୍ୟତୀତ ଅନ୍ୟ ଗୋଟିଏ ଗୁଳ୍ମ ରହିଛି (Mimosa rubicaulis) ଯାହାକୁ

---

୧୯. କଞ୍ଚନ ଫୁଲ ଗଛ ଏବଂ ଶିଆଳି ଲତା ଗୋଟିଏ ହିଁ ପରିବାରର ଏବଂ ଏମାନେ ସମସ୍ତେ ପୂର୍ଣ୍ଣ ସୂର୍ଯ୍ୟକିରଣ ଆବଶ୍ୟକ କରିଥା'ନ୍ତି ।

ରାଳ, ଦନ୍ତାରି ଅଥବା ଶିଆଳି ଲତା ବୋଲି ମଧ କୁହାଯାଇଥାଏ ।

ଶିଆଳି ଲତାରେ ଖରାଦିନେ ଫୁଲ ହୁଏ ଏବଂ ଶୀତଦିନରେ ଫଳ ଧରେ । ମଞ୍ଜି ପ୍ରାୟ ଫାଲ୍ଗୁନ-ଚୈତ୍ର ବେଳକୁ ମିଳିଥାଏ । ମଞ୍ଜିରୁ ହିଁ ଗଛ ହୋଇଥାଏ ଯଦିଓ କେତେକଙ୍କ ମତରେ ଯେହେତୁ ମାଟିରେ ଲାଗିଥିବା କାଣ୍ଡ (ଲଇ) ରେ ବି ଚେର ଧରିବାର ଦେଖାଯାଇଛି, ତେଣୁ କାଣ୍ଡ କାଟି ପୋତିଲେ ବି ବଞ୍ଚିଯାଇପାରେ ବୋଲି ସେମାନେ ମନେକରନ୍ତି ।

ଶିଆଳି ପତ୍ର ପ୍ରାୟ ବର୍ଷସାରା ମିଳିଥାଏ, କିନ୍ତୁ ବର୍ଷାଦିନେ ଅପେକ୍ଷାକୃତ ଅଧିକ ଏବଂ ଭଲ ପତ୍ର ମିଳେ ବୋଲି କୁହାଯାଏ । ଭାଦ୍ର, ଆଶ୍ୱିନ ଓ କାର୍ତ୍ତିକ-ଏଇ ତିନିମାସ (ଅନ୍ୟ ମତରେ ପୌଷ ମାସ ପର୍ଯ୍ୟନ୍ତ) ଭଲ ପତ୍ର ମିଳିବା ପରେ କ୍ରମେ ଏହା କମିଯାଏ ଏବଂ ପତ୍ର ଛୋଟ ଓ ମୋଟା (ମୋଡ଼ିଲେ ଭାଙ୍ଗିଯିବାର ଆଶଙ୍କା ଥାଏ) ହୋଇଯାଏ ।

ଶିଆଳି ଲତା ଯେତେ ବୁଢ଼ାହୁଏ ଏବଂ ଉଚ୍ଚକୁ ମାଡ଼େ, ସେଥିରୁ ଭଲ ପତ୍ର ମିଳିବାର ସମ୍ଭାବନା ସେଇ ଅନୁପାତରେ କମ୍ ହେବାକୁ ଲାଗେ । ଏପରି ସ୍ଥଳେ ବୁଢ଼ାଲଇକୁ ମୂଳରୁ ହାଣିଦେଲେ ବର୍ଷାଦିନେ ଯେଉଁ ଗଜାମାନ ବାହାରେ, ପ୍ରାୟ ବର୍ଷେ ପରେ ସେଥିରୁ ଭଲ ପତ୍ର ମିଳିଥାଏ । ତେଣୁ ଅଭିଜ୍ଞମାନେ ବୁଢ଼ାଲଇକୁ ଅନେକ ସ୍ଥାନରେ ହାଣି ଦେଇଥା'ନ୍ତି । ଅନ୍ୟ ଯେଉଁସବୁ କାରଣ ଯୋଗୁଁ ଲୋକେ ଏପରି କରିଥା'ନ୍ତି, ସେଗୁଡ଼ିକ ହେଉଛି :

- **ମହିଳା ତୋଳାଳିଙ୍କ ପାଇଁ ସୁବିଧା :**

ବୁଢ଼ା ଲଇରେ ଭଲପତ୍ର ଯଦିବା ମିଳେ, ତେବେ ଉଚ୍ଚରେ (ଅର୍ଥାତ୍, ଗଛମାନଙ୍କର ଉଚ୍ଚ ଡାଳକୁ ମାଡ଼ିଥିବା ଅଂଶରେ) । ମହିଳାମାନଙ୍କୁ ଏଭଳି ଉଚ୍ଚତାରୁ ପତ୍ର ତୋଳିବାକୁ କଷ୍ଟ ହୁଏ, ତେଣୁ ସେଭଳି ଲଇ କାଟିଦିଆଯାଏ ।

- **ପଟ ବା ଛାଲି ସଂଗ୍ରହ :**

କଅଁଳ ଲଇରୁ ଦଉଡ଼ି ତିଆରି ହେବା ଭଳି ପଟ ମିଳେ ନାହିଁ, ପାକଳ ଲଇରୁ ହିଁ ମିଳିଥାଏ । ତେଣୁ ପାକଳ ଲଇକୁ ହାଣି ତା'ର ପଟ ସଂଗ୍ରହ କରାଯାଏ ।

ଶ୍ରୀ ଚନ୍ଦ୍ରମଣି ଦାସଙ୍କ ମତରେ ଏଭଳି କଲମୀକରଣ ପାଇଁ ବୁଢ଼ା ଲଇ ହାଣିବାର ପ୍ରକୃଷ୍ଟ ସମୟ ହେଉଛି ମାର୍ଗଶୀର ମାସ । ତେବେ ଅନ୍ୟ ଅନେକେ ମତ ଦିଅନ୍ତି ଯେ ଗ୍ରୀଷ୍ମଋତୁ ହିଁ ଲଇ ହାଣିବାର ଉଚିତ ସମୟ। ବଣ ପୋଡ଼ି ସମୟ ପୂର୍ବରୁ ହଣା ଯାଇଥିବା ଲଇ ଖରାଦିନେ ଜଙ୍ଗଲରେ ଲାଗୁଥିବା ନିଆଁର ସ୍ପର୍ଶ

ପାଇବା ପରେ ସେଥିରୁ ଅଧିକ ଭଲ ଗଜା ହୋଇଥାଏ ବୋଲି ଲୋକେ କୁହନ୍ତି ।

ଖଲି ପାଇଁ ଉପଯୁକ୍ତ ଶିଆଳି ପତ୍ର ଅତ୍ୟଧିକ ମୋଟା ଅଥବା ପତଳା ହୋଇନଥାଏ ଏବଂ ଆକାରରେ ବଡ଼ ଥାଏ । ତେଣୁ ଏଇଭଳି ପତ୍ରକୁ ବାଛି ବାଛି ତୋଳିବାକୁ ହୁଏ ଏବଂ ଛୋଟ ପତ୍ରଗୁଡ଼ିକୁ ବଡ଼ ହେବା ପାଇଁ ଛାଡ଼ିଦିଆଯାଏ ।

ପତ୍ରକୁ ନେଇ ଶୁଖାଇବା ପରେ ଖଲି ତିଆରି କରାଯାଏ । ଶାଳ ପତ୍ର ଅପେକ୍ଷା ଏହା ଶୀଘ୍ର ଶୁଖିଥାଏ । କଞ୍ଚା ପତ୍ରର ଖଲି ବେଶି ଦିନ ରହିବ ନାହିଁ, ତେଣୁ ଶୁଖାଇବାକୁ ହୋଇଥାଏ; କିନ୍ତୁ ତା'ର ଅର୍ଥ ନୁହେଁ ଯେ ଶୁଖି ପାମ୍ପଡ଼ ଭଳି ହେବ । ପତ୍ର ଶୁଖିଥିବ, ଅଥଚ ମୋଡ଼ିଲେ ଫାଟିବ ନାହିଁ- ସେଇ ସୀମା ପର୍ଯ୍ୟନ୍ତ ଶୁଖାଇବାକୁ ହୁଏ ।

କେଉଁଠି କେଉଁଠି ତୋଳାଳିମାନେ ପତ୍ରକୁ ପ୍ରଥମେ ବିଡ଼ାବାନ୍ଧି ଦେଇ ସେଇ ବିଡ଼ାକୁ ହିଁ ଉପର ତଳ କରି ଶୁଖାଇଥାନ୍ତି । ସାଧାରଣତଃ ଖଲି ତିଆରି ନକରି କେବଳ ପତ୍ର ବିକ୍ରି କରୁଥିବା ଲୋକେ ଏପରି କରିଥା'ନ୍ତି, କିନ୍ତୁ ଏଥିରେ ବିଡ଼ା ଭିତରେ ଥିବା ଅନେକ ପତ୍ର ଭଲ ଭାବରେ ଶୁଖିପାରେ ନାହିଁ ଓ କଳା ପଡ଼ିଯାଏ । ଅପର ପକ୍ଷରେ ଗୋଟି ଗୋଟି କରି ପତ୍ରଗୁଡ଼ିକୁ ଖରାରେ ଶୁଖାଇବା ଦ୍ୱାରା ଏ ସମସ୍ୟାର ସମାଧାନ ହୁଏ, କିନ୍ତୁ ଇତସ୍ତତଃ (ଅସଜଡ଼ା) କରି ନ ଶୁଖାଇ ପରସ୍ପର ଉପରକୁ ଖଞ୍ଜି ଶୁଖାଇଲେ (ଫଟୋଚିତ୍ର ଦ୍ରଷ୍ଟବ୍ୟ) ତୋଳିବା ବେଳକୁ ସୁବିଧା ହୁଏ ଯେହେତୁ ଗୋଟିଏ ଦିଗରୁ ଠେଲିଲେ ପତ୍ରଗୁଡ଼ିକ ଗୋଟିଏ ବିଡ଼ାରେ ବାନ୍ଧିହେଲା ପରି ରହିଯା'ନ୍ତି । ଶୀଘ୍ର ପତ୍ର ତୋଳିନେବା (ଉଠାଇନେବା) ପାଇଁ ଏ ପଦ୍ଧତି ଖୁବ୍ ଉପଯୋଗୀ ।

ପତ୍ର ଅପେକ୍ଷା ଖଲି ତିଆରି କରି ବିକ୍ରି କଲେ ଅଧିକ ଆୟ ମିଳିଥାଏ, ଏପରିକି ଶାଳପତ୍ର ଖଲି ଅପେକ୍ଷା ମଧ ଅଧିକ ମୂଲ୍ୟ ମଳିଥାଏ । ଶାଳପତ୍ର ଖଲି ପାଇଁ ବେପାରୀମାନେ ହଜାର ପ୍ରତି ୬୦ ଟଙ୍କା ଦେଇଥିବା ବେଳେ ଶିଆଳି ଖଲି ପାଇଁ ୮୦ ଟଙ୍କା ଦେଇଥିବାର ଦୃଷ୍ଟାନ୍ତ ରହିଛି । ବିଶିପୁର ଗାଁ'ର ତୋଳାଳିମାନଙ୍କ ପାଇଁ ତେଣୁ ଏହାର ଗୁରୁତ୍ୱ ଏତେ ବେଶି ଯେ ଶୁଖିଥିବା ସମସ୍ତ ପତ୍ରରେ ଖଲି ତିଆରି ନ ସରିବା ପର୍ଯ୍ୟନ୍ତ ପରିବାରର ସଦସ୍ୟମାନେ ଶୋଇନଥା'ନ୍ତି (ଅର୍ଥାତ୍ ଯେତେ ରାତି ହେଉ ନା କାହିଁକି, ଖଲି ତିଆରି ଶେଷ କରିଥା'ନ୍ତି) ।

# ଶିଆଳି ଖଲି : କେତେ ଲାଭଜନକ ?

ନୟାଗଡ଼ ଜିଲ୍ଲାର ରଣପୁର ଠାରୁ କିଛି ଦୂରରେ ରହିଛି ସୁରୁକାବାଡ଼ି ଗାଁ । ଶିଆଳି ପତ୍ରର ବ୍ୟବସାୟ ଏଠିକାର ଅଧିକାଂଶ ପରିବାରର ଅନ୍ୟତମ ମୁଖ୍ୟ ଜୀବିକା, ଏମାନେ ଉଭୟ ପତ୍ର ତଥା ଖଲି ବିକ୍ରି କରିଥା'ନ୍ତି । ଅଳ୍ପ ଦୂରରେ ଥିବା ଆଖୁପଦର ଗାଁ'ର ପତ୍ରତୋଳାଳିମାନେ କିନ୍ତୁ ପତ୍ର ନ ବିକି କେବଳ ଖଲି ବିକ୍ରି କରନ୍ତି ।

ପତ୍ର ତୋଳିବା ପାଇଁ ମହିଳାମାନେ ପ୍ରାୟତଃ ସକାଳୁ ବାହାରି ଯା'ନ୍ତି ଏବଂ ଦିନ ୧୨ଟା ବା ୨ଟା ସୁଦ୍ଧା ଫେରନ୍ତି । ସେତେବେଳକୁ ପ୍ରତ୍ୟେକେ ପ୍ରାୟ ୨୦୦ କିମ୍ବା ଅଧିକ ଖଲି ତିଆରି ହୋଇପାରିବା ଭଳି ପତ୍ର ତୋଳି ଆଣିଥା'ନ୍ତି । ଉଲ୍ଲେଖଯୋଗ୍ୟ ଯେ ମଝିରେ ବଡ଼ ପତ୍ର ଓ ଚାରିପାଖରେ ଛୋଟପତ୍ର ଦେଇ ତିଆରି ହେଉଥିବା ପ୍ରତି ଖଲିରେ ପ୍ରାୟ ୭/୮ଟି ପତ୍ର ଲାଗିଥାଏ । ମହିଳାମାନେ ନିଜର ଅବସର ସମୟରେ ଖଲିପତ୍ର ସିଲେଇ କରନ୍ତି ଓ ୧୦୦ଟି ଖଲିକୁ ୧୦ରୁ ୧୩/୧୪ ଟଙ୍କା ଭିତରେ ବିକ୍ରି କରିଥା'ନ୍ତି ।

ପରିଶ୍ରମ ଦୃଷ୍ଟିରୁ ହିସାବ କରି ଦେଖିଲେ ପତ୍ର ତୋଳିବା, ଶୁଖାଇବା ଖଡ଼ିକା ତିଆରି କରିବା ଓ ସିଲେଇ କରିବା - ଏ ସମସ୍ତ ପାଇଁ ଜଣଙ୍କୁ ପ୍ରାୟ ଗୋଟିଏ ଦିନ ଲାଗିଥାଏ (୧୦୦ ଖଲି ପାଇଁ) । ପତ୍ର ଅଥବା ଖଡ଼ିକା କିଣିବାକୁ ପଡ଼ିନଥାଏ, ତଥାପି କେବଳ ପରିଶ୍ରମ ହିସାବକୁ ନେଲେ (ଖଡ଼ିକା ତିଆରି : ୧ଘଣ୍ଟା; ପତ୍ର ତୋଳା : ପ୍ରାୟ ୪ଘଣ୍ଟା; ଶୁଖାଇବା : ପ୍ରାୟ ୧ଘଣ୍ଟା; ସିଲେଇ : ପ୍ରାୟ ୩ଘଣ୍ଟା) ବି ନ୍ୟୂନତମ ମଜୁରିର ପ୍ରାୟ ଏକ ଚତୁର୍ଥାଂଶ ହିଁ ସେମାନେ ପାଇଥା'ନ୍ତି ।

ଅପର ପକ୍ଷରେ ଦୁଇଟି ବଡ଼ ପତ୍ର ମଝିରେ ୪ଟି ଛୋଟ ପତ୍ର ରଖି ଯେଉଁ ବିଡ଼ା କରାଯାଏ (କଞ୍ଚା), ସେଭଳି ୨୦ଟି ବିଡ଼ାକୁ ସେମାନେ ୪ଟଙ୍କାରେ ବିକ୍ରି କରିଥା'ନ୍ତି । ଏହାର ଓଜନ (କଞ୍ଚା) ପ୍ରାୟ ୪୦୦ ବା ୫୦୦ ଗ୍ରାମ ହୁଏ ଏବଂ ସେ ଦୃଷ୍ଟିରୁ ଦେଖିଲେ ୨୦୦୦-୨୦୦୧ ମସିହା ପାଇଁ ନିର୍ଦ୍ଧାରିତ ସର୍ବନିମ୍ନ ସରକାରୀ ସଂଗ୍ରହ ଦର ଏମାନଙ୍କୁ ପ୍ରାୟ ମିଳିଯାଇଥାଏ । କିନ୍ତୁ ୮୦ଟି ଖଲି ଥିବା ଗୋଟିଏ ଚକି ପାଇଁ ଏହି ଦର ୭ ଟଙ୍କା ଏବଂ ତଦନୁଯାୟୀ ୧୦୦ ଖଲିର ସର୍ବନିମ୍ନ ଦର ପ୍ରାୟ ଟ. ୮.୮୦ ପଇସା ହେବ । କିନ୍ତୁ ୧୦୦ ଖଲିର ଓଜନ (ଶୁଖିଲା) ପ୍ରାୟ ୧ କେଜି ୭୫୦ ଗ୍ରାମ ହେଉଥିବା ବେଳେ ସେଥିରେ ଥିବା ପତ୍ରର ଓଜନ (କଞ୍ଚା) ହାରାହାରି ୩ କେଜି ୫୦୦ ଗ୍ରାମ ହେବ ଯାହାର ସର୍ବନିମ୍ନ ସଂଗ୍ରହ ଦର (କେବଳ ପତ୍ର) ଅନ୍ତତଃ ୨୧ ଟଙ୍କା ହେବା କଥା । ଏ ଟଙ୍କା ସହିତ ପରିଶ୍ରମକୁ ହିସାବ କଲେ ୧୦୦ ଖଲିର ଦର ନିଶ୍ଚୟ ଯଥେଷ୍ଟ ଅଧିକ ହେବା କଥା । କିନ୍ତୁ ଖଲି ପ୍ରସ୍ତୁତକାରୀଙ୍କୁ ଏତେ ଅଧିକ ଦର ମିଳେ ନାହିଁ, ବରଂ ୧୦୦ ଖଲି ପାଇଁ ସେମାନେ ଯଦି ୩୦/୪୦ ଟଙ୍କା ଦାବି କରିବସନ୍ତି, ତା'ହେଲେ ଖଲି ବ୍ୟବସାୟ ହିଁ ବନ୍ଦ ହୋଇଯିବାର ଆଶଙ୍କା ରହିଛି ।

ଶୁଖିଲା ପତ୍ରକୁ ଅଳ୍ପ ଭିଜାଇ ଖଲି ସିଲେଇ କରାଯାଏ (ତେବେ ଶୀତ ଦିନେ ନ ଭିଜାଇଲେ ବି ଚଳେ ବୋଲି କେହି କେହି କୁହନ୍ତି) । କିନ୍ତୁ ଶିଆଳି ପତ୍ରର ଦନା ବିଶେଷ ତିଆରି ହୁଏ ନାହିଁ କାରଣ ଦନା ରୂପେ ମୋଡ଼ି ହୋଇ ରହିବାର ଦୃଢ଼ତା ଶାଳପତ୍ରରେ ଯେତେ ଅଛି, ଶିଆଳି ପତ୍ରରେ ସେତିକି ନାହିଁ ।

ଖଜୁରି ବାହୁଙ୍ଗା, ବାଉଁଶ ପାତିଆ ଅଥବା ବେତ ଖୋଳପା ଇତ୍ୟାଦିକୁ ନଖରେ ଚିରି ଖଡ଼ିକା ପ୍ରସ୍ତୁତ କରାଯାଇଥାଏ । ତେବେ ଜୁଣ ବା ଖରି ଘାସ (ଖଡ଼ିକା ଘାସ ବା Aristida setacea ?) ଖଡ଼ିକା ତିଆରି ପାଇଁ ସର୍ବୋତ୍ତମ ବୋଲି କୁହାଯାଏ । ଏ ଘାସକୁ କେବଳ ଶୁଖାଇ ଦେଲେ ହିଁ ଖଡ଼ିକା ବାହାରେ, ନଖରେ ଚିରିବା ଆଦି ଅନ୍ୟାନ୍ୟ ପରିଶ୍ରମ ଦରକାର ହୁଏ ନାହିଁ ।

ଶିଆଳି ମଞ୍ଜି ବଳକାରକ; ଏହାକୁ ଭାଜି ଅଥବା ପୋଡ଼ି କରି ଆଦିବାସୀମାନେ ଖାଇଥା'ନ୍ତି । ପତ୍ର ପ୍ରଶମକ ଭଳି କାମ ଦିଏ, ଅର୍ଥାତ ଏଥିରେ ଥିବା ଉପାଦାନ ଶରୀର ଭିତରକୁ ଗଲେ ଆରାମ ବୋଧହୁଏ । ଏହା ଛଡ଼ା ଶିଆଳି ପତ୍ର ପଶୁ ଖାଦ୍ୟ ମଧ । ଲଇ ଘର ଛପର ଇତ୍ୟାଦିରେ ଲାଗେ, ତେବେ ଏହାର (ଲଇ) ଅର୍ଥନୈତିକ ଉପଯୋଗିତା ଦଉଡ଼ି ତିଆରିରେ ହିଁ ବିଶେଷ ରହିଛି ।

### *ପବିତ୍ର ଶିଆଳି ବନ !*

*ଓଡ଼ିଶାର କେତେକ ଆଦିବାସୀ ସଂପ୍ରଦାୟରେ ଶିଆଳି ପତ୍ରର ଧାର୍ମିକ ଉପଯୋଗର ପରମ୍ପରା ଥିଲା ଯାହା ସେଭଳି ସୁଦୃଢ଼ ଅଥବା ପ୍ରଭାବକାରୀ ଥିବାର ସୂଚନା ମିଳି ନାହିଁ, କିନ୍ତୁ ସୁଦୂର ରାଜସ୍ଥାନରେ ଧର୍ମବିଶ୍ୱାସ ଶିଆଳି ଲତାର ସଂରକ୍ଷଣରେ ବିଶେଷ ସହାୟକ ହୋଇପାରିଛି ।*

*ରାଜସ୍ଥାନରେ ଏ ଗଛଟି ବିରଳ ହୋଇପଡ଼ିଛି । ଯେଉଁ ତିନିଟି ସ୍ଥାନରେ ଏହାର ଅସ୍ତିତ୍ୱ ଦେଖିବାକୁ ମିଳେ, ସେଥିମଧ୍ୟରୁ ଦୁଇଟିରେ ତା'ର କେବଳ ନାମମାତ୍ର ବା ନଗଣ୍ୟ ଅସ୍ତିତ୍ୱ ରହିଛି; କିନ୍ତୁ ଉଦୟପୁର ଜିଲ୍ଲାର ଝାଡ଼ୋଲ ତହସିଲ ଅନ୍ତର୍ଗତ ମାଦଡ଼ି ଗାଁ' ନିକଟରେ ଏଇ ଲତାର ପ୍ରାଧାନ୍ୟ ଥିବା ଏକ ଜଙ୍ଗଲ ଦେଖାଯାଏ ଯାହା ପ୍ରମାଣ କରେ ଯେ ସେଠାରେ ଶିଆଳି ଲତାର ଅସ୍ତିତ୍ୱ ବହୁକାଳ ଧରି ସୁରକ୍ଷିତ ରହିଆସିଛି । ଏଇ ସୁରକ୍ଷିତ ଅସ୍ତିତ୍ୱ ସମ୍ଭବ ହୋଇଛି କେବଳ ସ୍ଥାନୀୟ ଆଦିବାସୀ ଭିଲମାନଙ୍କର ଧର୍ମବିଶ୍ୱାସ ଯୋଗୁଁ । ସେମାନେ ଏ ଗଛକୁ 'ଯୋଗଣବେଲ୍' ବୋଲି କହିଥା'ନ୍ତି ଏବଂ ବିଶ୍ୱାସ କରନ୍ତି ଯେ ଶିଆଳି ପତ୍ରରେ ଶ୍ରାଦ୍ଧ ଭୋଜନ ଦେଲେ ପରଲୋକଗତ ଆତ୍ମାର ସଦ୍‌ଗତି ହୁଏ । ଏହା ବ୍ୟତୀତ, ଅନ୍ୟ କେତେକ ଧାର୍ମିକ କାର୍ଯ୍ୟ ପାଇଁ ମଧ ସେମାନେ ଏହାର ଉପଯୋଗ କରିଥା'ନ୍ତି । ତେଣୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ ସେମାନେ ଶିଆଳି ପତ୍ର ଛିଣ୍ଡାନ୍ତି ନାହିଁ, ଗଛ କାଟିବା ତ ଦୂରର କଥା । ଧାର୍ମିକ ବିଧିନିଷେଧ ଗୋଟିଏ ଗଛର ସଂରକ୍ଷଣ ପାଇଁ କେତେଦୂର ପ୍ରଭାବକାରୀ ହୋଇପାରେ, ଏ ଦୃଷ୍ଟାନ୍ତଟି ତା'ର ଜ୍ୱଳନ୍ତ ଉଦାହରଣ ।*

ସବୁ ପତ୍ରତୋଳାଳି ଶିଆଳି ଦଉଡ଼ି ତିଆରି କରନ୍ତି ନାହିଁ । ଯେଉଁ କେତେକ ଗୋଷ୍ଠୀ ବା ଜାତି ଏଇ ଦଉଡ଼ି ତିଆରିରେ ସିଦ୍ଧହସ୍ତ, ସେମାନଙ୍କ ଭିତରେ ଶିମିଳିପାଳ ଜଙ୍ଗଲର ଯାଯାବର ଆଦିମ ଅଧିବାସୀ ବିର୍‌ହର୍ ବା ମାଙ୍କଡ଼ିଆ ଅନ୍ୟତମ । ଏଇଭଳି ଏକ ମାଙ୍କଡ଼ିଆ ଦଳକୁ ଆମେ ଭେଟିଥିଲୁ (ଅଗଷ୍ଟ, ୨୦୦୧) ବାରିପଦା ଠାରୁ କିଛି ଦୂର ଚିତ୍ରଡ଼ାର ପ୍ରତିଷ୍ଠିତ ବନଜାତ ଦ୍ରବ୍ୟ ବ୍ୟବସାୟୀ ଶ୍ରୀ ନରେନ୍ଦ୍ର ବେହେରାଙ୍କ ଘରେ । ଶ୍ରୀ ବେହେରା ସେମାନଙ୍କୁ ଡକାଇ ରହିବା ପାଇଁ ଜାଗା ଦେଇଥିଲେ ଏବଂ ସେମାନଙ୍କ ହାତରେ ଶିଆଳି ଦଉଡ଼ି ତିଆରି କରାଉଥିଲେ । ଏ ଦଉଡ଼ି ବେଶ୍ ଶକ୍ତ ଏବଂ ବର୍ଷାରେ ଭିଜିଲେ ମଧ୍ୟ ସହଜରେ ନଷ୍ଟ ହୁଏ ନାହିଁ ବୋଲି ଓଡ଼ିଶା ବାହାରକୁ (ଯଥା, କଲିକତା) ରପ୍ତାନୀ କରାଯାଉଛି । ଶ୍ରୀ ବେହେରା କେଜି ପ୍ରତି ପ୍ରାୟ ୩୦ ଟଙ୍କା ଦରରେ ଏହାକୁ ବିକ୍ରି କରିଥା'ନ୍ତି ଏବଂ ତିଆରି ବାବଦରେ ତାଙ୍କର ଖର୍ଚ୍ଚ ନିମ୍ନମତେ ହୋଇଥାଏ :

ଶିଆଳି ପଟ (ଶୁଖିଲା) : କେଜି ପ୍ରତି ପ୍ରାୟ ୯ ଟଙ୍କା[୧୯(କ)]

ଦଉଡ଼ି ତିଆରି ମଜୁରି   କେଜି ପ୍ରତି ପ୍ରାୟ ୧୦ ଟଙ୍କା (ନଗଦ); ଏହା ବ୍ୟତୀତ ମଜୁରିଆ(ମାଙ୍କଡ଼ିଆ)ମାନଙ୍କ ଖାଇବା ବାବଦରେ ଖର୍ଚ୍ଚ ହୋଇଥାଏ ପ୍ରାୟ ୫ ଟଙ୍କା (କେଜି ପ୍ରତି) । ଅତଏବ, ମୋଟ ଖର୍ଚ୍ଚ ପ୍ରାୟ ୨୪ ଟଙ୍କା ହୋଇଥାଏ । କିନ୍ତୁ ପଟରୁ ଦଉଡ଼ି ତିଆରି ବେଳେ ଯାହା ନଷ୍ଟ ହୋଇଥାଏ, ତାକୁ ହିସାବକୁ ନେଲେ ଖର୍ଚ୍ଚ ପ୍ରାୟ ୨୭/୨୮ ଟଙ୍କା ହୋଇଯାଏ ବୋଲି ସେ କୁହନ୍ତି ।[୧୯(ଖ)]

ବର୍ଷା ଦିନେ ହିଁ ଶିଆଳି ପଟ ସଂଗ୍ରହ କରିବାକୁ ସୁବିଧା କାରଣ ସେତେବେଳେ ଛାଲି କିଛିଟା ନରମ ଥାଏ । ଏଇ ପଟକୁ ଶୁଖାଇ ଦିଆଯାଏ; ଯଦି ଖରା ନଥାଏ, ତା'ହେଲେ ନିଆଁରେ ସେକି ଶୁଖାଇବାର ବ୍ୟବସ୍ଥା ମଧ୍ୟ କରାଯାଏ । ଶୁଖିଲା ଛାଲିକୁ ଭିଜାଇ ନରମ କରାଯିବା ପରେ ନଖ ଦ୍ୱାରା ଛଡ଼ାଇ ସେଥିରୁ ତନ୍ତୁ ବା ସୂତା ବାହାର କରାଯାଏ (ଫଟୋ ଚିତ୍ର ଦ୍ରଷ୍ଟବ୍ୟ) । ଏଇ ତନ୍ତୁକୁ ବି ଶୁଖାଇବାକୁ ହୁଏ, ତା'ପରେ ତା' ଉପରେ ପାଣି ଛିଞ୍ଚି ଈଷତ୍ ନରମ କରିବା ପରେ 'ପାଗ' କରାଯାଏ, ଅର୍ଥାତ ଦଉଡ଼ି ବଳାଯାଏ । ସେ ଦଉଡ଼ିକୁ ଶୁଖାଇ ଦିଆଯିବା ପରେ ବିକ୍ରି କରାଯାଇଥାଏ ।

କହିବା ବାହୁଲ୍ୟ ଯେ ମାଙ୍କଡ଼ିଆମାନେ ହିଁ ଉଭୟ ପଟ ତଥା ତା'ର ଦଉଡ଼ି ବିକ୍ରି କରିଥାନ୍ତି ବା ଯୋଗାଇଥାନ୍ତି । ବିଚିତ୍ର କଥା ହେଉଛି ସେମାନେ ଶିଆଳି ପତ୍ର ବ୍ୟବସାୟ କରନ୍ତି ନାହିଁ । ଦଉଡ଼ି ବ୍ୟତୀତ ଶିଆଳି ପଟରୁ ସେମାନେ ଗୋଟିଏ ପ୍ରକାର ଛୋଟ ଡାଲା (ଟୁପା ବା ଯୋତା) ତିଆରି କରିଥା'ନ୍ତି ଯାହା ଟୋଲ ତେଲ ନିଷ୍କାସନ ପାଇଁ କାମରେ ଆସେ । ଏଇ ଡାଲାର ବିକ୍ରି ଦର ପ୍ରାୟ ୯ ଟଙ୍କା (ଗୋଟା ପ୍ରତି) ।

***

---

୧୯(କ). ସୁରୁକାବାଡ଼ି ନିକଟସ୍ଥ ମାଳ ଅଞ୍ଚଳର କେତେକ ଲଇ ସଂଗ୍ରହକାରୀ ପ୍ରାୟ ଦୁଇ ଫୁଟ ଲମ୍ବର ୪/୫ଟି କଞ୍ଚା ଶିଆଳି ପଟକୁ ବିଡ଼ା କରି ଏକ ଟଙ୍କା ବା ଦୁଇଟଙ୍କାରେ ବିକ୍ରି କରିଥା'ନ୍ତି । ଲୋକେ ଘରଛପର ଆଦି ପାଇଁ ଏହାକୁ କିଣିଥା'ନ୍ତି ।

୧୯(ଖ). ବଣେଇ ଉପଖଣ୍ଡରେ ମାଙ୍କଡ଼ିଆମାନେ ନିଜେ ତିଆରି କରିଥିବା ଦଉଡ଼ିକୁ ଓଜନରେ ନ ବିକି ପ୍ରାୟ ୫ ହାତ ଲମ୍ବ ଏବଂ ଅଙ୍ଗୁଳି-ମୋଟ (ବା ଅଧିକ ?)ର ଦଉଡ଼ିକୁ ୧୫/୨୦ ଟଙ୍କାରେ ବିକ୍ରି କରିଥା'ନ୍ତି । ଏହା ସାଧାରଣତଃ ଗୋରୁଗାଈ ବାନ୍ଧିବା ପାଇଁ ଦରକାର ହୋଇଥାଏ । ସେମାନେ ପ୍ରାୟ ଏକ ଇଞ୍ଚ ଚଉଡ଼ା ଓ ଏକ ମିଟର ଲମ୍ବର ଶୁଖିଲା ପଟକୁ ଏକ ଟଙ୍କାରେ ବିକ୍ରି କରିଥା'ନ୍ତି ଯାହା କେନ୍ଦୁପତ୍ର ବିଡ଼ା ବାନ୍ଧିବା ପାଇଁ ଦରକାର ହୋଇଥାଏ ।

# ମସାଣି ଛାଲି

ଶିମିଳିପାଳ କେବଳ ଜଙ୍ଗଲଟିଏ ମାତ୍ର ନୁହେଁ, ଏ ପୃଥିବୀରେ ଥିବା ଅଳ୍ପ କେତୋଟି ବିରାଟ ଅମ୍ଳଜାନ କାରଖାନାଗୁଡ଼ିକ ମଧ୍ୟରୁ ଗୋଟିଏ ଯାହା ପ୍ରକୃତି ନିଜେ ସୃଷ୍ଟି କରିଛି । ଶିମିଳିପାଳ ନ ରହିଲେ ଓଡ଼ିଶାର ଅବସ୍ଥା କ'ଣ ହେବ, ସେକଥା ସାଧାରଣ ଲୋକ ବୁଝନ୍ତୁ ବା ନବୁଝନ୍ତୁ, କିନ୍ତୁ ପରିବେଶ ବିଜ୍ଞାନୀମାନେ ଠିକ୍ ବୁଝନ୍ତି ।

କିନ୍ତୁ ସେଇ ଶିମିଳିପାଳର ସ୍ଥିତି ଆଜି ବିପନ୍ନ କାରଣ କାଠଚୋରଙ୍କ ସହିତ ଛାଲିଚୋରମାନେ ସୃଷ୍ଟି କରିଛନ୍ତି ବିଭୀଷିକା । ଠାକୁରମୁଣ୍ଡାର ଜଣେ ଛାଲି ବେପାରୀ ନିଜେ ସ୍ୱୀକାର କରି କହିଲେ, "ଛାଲି ସଂଗ୍ରହ ଋତୁରେ ଆଜ୍ଞା ଦେଖିବେ ଶିମିଳିପାଳର ଅବସ୍ଥା କ'ଣ ହୁଏ । ଚାରିବର୍ଷ ତଳେ ଏଇପରି ଏକ ସମୟରେ ଆମେ ଗୋଟିଏ ଫଟୋ ଉଠାଇଥିଲୁ, ସେଥିରେ ଆପଣ ଦେଖିବେ ଜଙ୍ଗଲ ଯେପରି କାନ୍ଦୁଛି xxx ।"

ଯେଉଁ ଛାଲି ପାଇଁ ଏଇ ବିଭୀଷିକା, ତାହା ଅର୍ଜୁନ କିମ୍ବା ଅଶୋକ ଛାଲି ନୁହେଁ; ପଜ ଛାଲି । ସ୍ଥାନୀୟ ଲୋକେ ଖଣ୍ଡାଧାରୁଣୀ ବୋଲି ବି କହିଥା'ନ୍ତି ଏ ଗଛ (ପଜ)କୁ । ସୁବିଧା ଓ ଅଧିକ ଛାଲି ପାଇବା ପାଇଁ ସେମାନେ ସାଧାରଣତଃ ଗଛକୁ କାଟି ଦେଇଥା'ନ୍ତି, କିନ୍ତୁ ଜୀବିତ ଗଛରୁ ଛାଲି ଛଡ଼ାଇ ଆଣି ତା'କୁ ମରିବାକୁ ଛାଡ଼ିଦେବାର ଅଭ୍ୟାସ ବି ସେମାନଙ୍କ ପାଇଁ ବିରଳ ନୁହେଁ ।

ପଜର ବୈଜ୍ଞାନିକ ନାମ Litsea monopetala । ଏହାର ଅନ୍ୟାନ୍ୟ ଆଞ୍ଚଳିକ ନାମ ମଧ୍ୟ ରହିଛି, ଯଥା : ବାଘୁଆରି ଏବଂ ବସଦରା ( ? ) । ମେଦା (ମେଧାଛାଲି) ନାମରେ ବି ଏ ଗଛର ବ୍ୟାପକ ପରିଚୟ ରହିଛି ।

ଅନ୍ୟ ଗୋଟିଏ ଗଛ ହେଉଛି ଜୟସଣ୍ଡା (Litsea glutinosa) ବା ଜଇସଣ୍ଡା; ତା'ର ଛାଲି ଅଧିକ ପରିଚିତ ଲେଧା ଛାଲି ନାମରେ । ନୟାଗଡ଼ ଜିଲ୍ଲାର ଗଡ଼ବାଣିକିଲୋ ଅଞ୍ଚଳରେ ଜୟସଣ୍ଡାର ସ୍ଥାନୀୟ ନାମ ଗରୁଡ଼ ଗୋବିନ୍ଦ ଏବଂ ଏଭଳି ଅନ୍ୟାନ୍ୟ ଆଞ୍ଚଳିକ ନାମ (ଯଥା : ଖୋର୍ଦ୍ଧାର ଚାନ୍ଦପୁର ଅଞ୍ଚଳରେ 'ଆମିନି' ଏବଂ ନବରଙ୍ଗପୁର ଅଞ୍ଚଳରେ 'ଲାଞ୍ଜିଆ') ମଧ୍ୟ ରହିଛି ଏ ଗଛର ।

ଉପରୋକ୍ତ ଗଛ ଦୁଇଟି ଗୋଟିଏ ପରିବାରର (ହୁଏତ ସେଥିପାଇଁ କୌଣସି ସାଦୃଶ୍ୟ ଥିବା ଯୋଗୁଁ ଜଇସଣ୍ଡାକୁ ମଧ୍ୟ ବାଘୁଆରି ବୋଲି କୁହାଯାଇଥାଏ) ଏବଂ ଏଗୁଡ଼ିକର ଛାଲି ମସାଣି[୨୦] ଛାଲି ବା ମସିଣା

---

୨୦. ଅନ୍ୟ କେତେକ ଗଛକୁ ବି ମସାଣିଆ କୁହାଯାଇଥାଏ । ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ମଶାଣିଆ ବା ତନ୍ଥାଳୁ ଗଛ ରୂପେ Ehretia acuminata/laevis (ଗୁଆଚିପ) ଭଳି ଗଛକୁ ସଙ୍କେତ କରାଯାଇଛି ଯାହାର ଛାଲିକୁ ବାଟି ଶୋଥ, ବ୍ରଣ ଆଦିର ପ୍ରତିକାର ପାଇଁ ବ୍ୟବହାର କରାଯାଏ । ଅନ୍ୟ ଗୋଟିଏ ମସାଣିଆ ଗଛ ହେଉଛି Aporosa dioica । ତେବେ ମସାଣି ଛେଲିର ଚାଲାଣ ଯେଉଁ ଗଛଗୁଡ଼ିକରୁ ବିଶେଷ ରୂପେ ହୋଇଛି, ସେଗୁଡ଼ିକ ହେଉଛି ପଜ ଓ ଜଇସଣ୍ଡା ।



ଶିଆଳି ପତ୍ର ସଜାଇ ଶୁଖାଯାଇଛି
(କାଳିଆପୋଷ, ସୁନ୍ଦରଗଡ଼)



ବିର୍‌ହୋର୍‌ମାନେ ଶିଆଳି ପଟରୁ ତନ୍ତୁ
ବାହାର କରୁଛନ୍ତି (ଚିତ୍ରଡ଼ା, ମୟୂରଭଞ୍ଜ)



ବିର୍‌ହୋର୍ ମହିଳାଙ୍କର ଶିଆଳି
ପଟର ସଂସାର (ଚିତ୍ରଡ଼ା)



ବିର୍‌ହୋର୍ ମହିଳାଙ୍କ ଦ୍ୱାରା ଶିଆଳି
ଦଉଡ଼ି ପ୍ରସ୍ତୁତି (ଚିତ୍ରଡ଼ା)



ବୁଢ଼ୀଖମାରୀ (ମୟୁରଭଞ୍ଜ) ଜଙ୍ଗଲ ସୁରକ୍ଷା ଆନ୍ଦୋଳନର ପୁରୋଧା ଶ୍ରୀଯୁକ୍ତ ଗୋରଚାନ୍ଦ ମହାତୋ ଗୋଟିଏ ପଜ ଗଛର ଛାଲି ଚୋରି ହୋଇଥିବା ଅଂଶକୁ ଦେଖାଉଛନ୍ତି ।



ଛାଲି ଛଡ଼ାଇବାର ଉଚିତ ବିଧି
(ଯଥେଷ୍ଟ ଦୂରତା ରଖି ଛାଲି ଛଡ଼ାଯାଇଥିବା ଅଂଶ) । ସୂଚନା-ଯୋଗ୍ୟ ଯେ ଗଛ ପ୍ରସ୍ତୁତ କରିଥିବା ଖାଦ୍ୟ ଛାଲି ମାଧ୍ୟମରେ ଚେରକୁ ପହଞ୍ଚିଥାଏ । ତେଣୁ ଗଛର ଉପରଭାଗରୁ ମୂଳ ପର୍ଯ୍ୟନ୍ତ ଛାଲିର ଆସ୍ତରଣ ଯେତେ ବ୍ୟାପକ ଭାବେ ଅକ୍ଷତ ରହିବ, ଚେର ପର୍ଯ୍ୟନ୍ତ ଖାଦ୍ୟ ଯୋଗାଣ ସେତେ ବେଶି ସୁନିଶ୍ଚିତ ହୋଇପାରିବ ।



ଛାଲି ଛଡ଼ାଇବାର ଭୁଲ ଦିଗ । ଏପରି ଛଡ଼ାଇଲେ ଖାଦ୍ୟ ଯୋଗାଣ ବ୍ୟାହତ ହୋଇ ଗଛ ମରିଯିବାର ବିଶେଷ ଆଶଙ୍କା ଥାଏ ।

ଛାଲି ନାମରେ ବି ପ୍ରସିଦ୍ଧ । ଏଇ ଛାଲିଗୁଡ଼ିକରେ ରହିଛି ଅଠାଳିଆ ଉପାଦାନ; ସେଗୁଡ଼ିକର ଗୁଣ୍ଡକୁ ପାପୁଲିରେ ରଖି ଅଳ୍ପ ପାଣି ଦେଇ ଦଳିଲେ ଏଇ ଅଠାଳିଆ ଗୁଣ ପରିଷ୍କାର ଜଣାପଡ଼େ । ସେଥିପାଇଁ ଧୂପକାଠି ତିଆରିର କଞ୍ଚାମାଲ ହିସାବରେ ମସାଣି ଛାଲିର ଖୁବ୍ ଚାହିଦା ରହିଛି କାରଣ ଝୁଣା, ଗୁଗ୍‌ଗୁଳ ଆଦି ଧୂପଯୋଗ୍ୟ ଉପାଦାନକୁ କାଠିରେ ବାନ୍ଧି ରଖିବା ପାଇଁ ଏଇ ଅଠା ସାହାଯ୍ୟ କରେ । ପ୍ରାକୃତିକ ହୋଇଥିବ, ଭଲ କାମ କରୁଥିବ, ଅଥଚ ଜଳିଲେ ଦୁର୍ଗନ୍ଧ କରୁନଥିବ (ଧୂପର ସୁଗନ୍ଧକୁ ନଷ୍ଟ କରୁନଥିବ) : ଏସବୁ ସର୍ତ୍ତକୁ ପୂରଣ କରୁଥିବା ଭଳି ଗୁଣ ମସାଣି ଛାଲିରେ ରହିଛି ବୋଲି ତା'ର ଏତେ ଚାହିଦା ।[୨୦(କ)]

ଏ ଛାଲିର ଚିକିତ୍ସାଗତ ବ୍ୟବହାର ମଧ୍ୟ ରହିଛି । ତେବେ ବ୍ୟାବସାୟିକ ଚାହିଦା ମୁଖ୍ୟତଃ ଧୂପ ତିଆରି ଉପାଦାନ ରୂପେ ହିଁ ରହିଛି ଏବଂ ଏ ଚାହିଦା କ୍ରମଶଃ ବୃଦ୍ଧି ପାଉଛି । କିନ୍ତୁ ଛାଲି କାଢ଼ିବା ପାଇଁ ଲୋକେ ବିବେକହୀନଙ୍କ ଭଳି ଯେଉଁ କାମ କରୁଛନ୍ତି, ଆଉ କିଛି ବର୍ଷ ପରେ ଏସବୁ ଗଛ ପ୍ରାୟ ଲୋପ ପାଇଯିବା ଅସମ୍ଭବ ନୁହେଁ । ବସ୍ତୁତଃ, ଓଡ଼ିଶାର କେତେକ ଅଞ୍ଚଳରେ ଲେଧା ମେଧା ଗଛ ପ୍ରାୟ ନିଶ୍ଚିହ୍ନ ହେବା ଅବସ୍ଥାରେ ପହଞ୍ଚିଛି । ଅର୍ଥାତ୍, କାହାଣୀ ବର୍ଣ୍ଣିତ ସେଇ ବୁଢ଼ୀ - ଯିଏ କି ପ୍ରତିଦିନ ଗୋଟିଏ ଲେଖାଏଁ ସୁନା ଅଣ୍ଡା ପାଉଥିବା ସତ୍ତ୍ୱେ ଲୋଭବଶତଃ ଧୈର୍ଯ୍ୟହରା ହୋଇପଡ଼ି ଏକାବେଳକେ ସବୁ ପାଇଯିବା ଲୋଭରେ ନିଜ ହଂସଟିକୁ ମାରିଦେଇଥିଲା- ପରି ନିର୍ବୋଧ ଲୋଭୀମାନେ ଏବେ ବି ଅଛନ୍ତି ।

ଛାଲି ପାଇଁ ଗଛ ମାରିବା ଅନିବାର୍ଯ୍ୟ ନୁହେଁ । ନିମ୍ନ ଉଲ୍ଲିଖିତ କେତେକ ସୂତ୍ର ମସାଣି ଛାଲିର ସ୍ଥାୟୀ ଉତ୍ପାଦନକ୍ଷମ ସଂଗ୍ରହ ପଦ୍ଧତି ରୂପରେ ଅନୁସୃତ ହୋଇପାରେ, ଯଥା :

- କେବଳ ହାତୁଡ଼ିରେ ପିଟି ପିଟି ଛାଲି ବାହାର କରନ୍ତୁ । ତା' ଫଳରେ ଛାଲିର ସେଇ ଅଂଶଗୁଡ଼ିକ ବାହାରି ଆସିବ ଯାହାକୁ ପରିତ୍ୟାଗ କରିବା ପାଇଁ ଗଛ ଏକପ୍ରକାର ପ୍ରସ୍ତୁତ ରହିଥିଲା ।

ବଡ଼ ଓ ପୁରୁଣା ଗଛର ବଲ୍‌କଳ (ବକଳ)କୁ ସାଧାରଣତଃ ଦୁଇଟି ସ୍ତରରେ ବିଭକ୍ତ କରାଯାଇପାରେ : (୧) ବହିର୍ସ୍ତର ଏବଂ (୨) ଅନ୍ତର୍ସ୍ତର । ଏ ଭିତରୁ ପ୍ରଥମଟି ବାହାରକୁ ରହିଥାଏ ଏବଂ ଅପେକ୍ଷାକୃତ ମୋଟା ଓ କେତେକ କ୍ଷେତ୍ରରେ ଫାଟି ଯାଇଥିବା ଭଳି ଦେଖାଯାଏ । ଠିକ୍ ତା'ର ତଳେ ଥାଏ ୨ୟ ଏବଂ ଅପେକ୍ଷାକୃତ ପତଳା ତଥା କଞ୍ଚା ସ୍ତରଟି ଯାହା ଗଛ ପାଇଁ ନିହାତି ଦରକାର ।[୨୧] ଟାଙ୍ଗିଆ ଭଳି ଅସ୍ତ୍ର ଦ୍ୱାରା ଛାଲି ଛଡ଼ାଇବା ବେଳେ ଏଇ ୨ୟ ସ୍ତରଟି ମଧ୍ୟ ପ୍ରଥମଟି ସହିତ ଆଂଶିକ ବା ସଂପୂର୍ଣ୍ଣ ଉଠି ଆସିଥାଏ ଯାହା

---

୨୦(କ). ଧୂପକାଠି ତିଆରି କରୁଥିବା ଗୋଟିଏ ରାଜସ୍ଥାନୀ ମହିଳା ସମିତିର ଜଣେ ପ୍ରତିନିଧି ଲେଖକକୁ କହିଥିଲେ ଯେ 'ମୈଦା ଲକଡ଼ି' (ଲେଧା ଛାଲି) ନିଜର ଚିକ୍କଣ (ଲାଳୁଆ) ରସ ପ୍ରଭାବରେ ଝୁଣା ଆଦିର ମିଶ୍ରଣକୁ ଚକଟି ମଣ୍ଡ ପରି କରିବାରେ ସାହାଯ୍ୟ କରିଥା'ଏ ଏବଂ ତା' ସହିତ, ଧୂପ ଯେପରି ଧୀରେ ଧୀରେ ଜଳିବ, ସେଥିପାଇଁ ମଧ୍ୟ ଉପଯୋଗୀ ହୋଇଥାଏ ।

୨୧. ବହିର୍ସ୍ତର ସଂପୂର୍ଣ୍ଣ ବାହାରିଆସିବା ଯେ ଗଛ ପାଇଁ ଆଦୌ କ୍ଷତିକାରକ ନୁହେଁ, ସେପରି ଭାବିବା ଭୁଲ ହେବ । ତେବେ ଅନ୍ତର୍ସ୍ତର ଅକ୍ଷତ ରହିଲେ ନିଜର ସୁରକ୍ଷା କବଚକୁ ଫେରିପାଇବା ଲାଗି ଗଛ ଶୀଘ୍ର ସମର୍ଥ ହୁଏ ।

## *ବିଷାକ୍ତ ଧୂପ*

*ଆମେ ଧୂପ ବ୍ୟବହାର କରୁ ପବିତ୍ର ବାତାବରଣ ପାଇବା ପାଇଁ, କିନ୍ତୁ ଆଜିକାଲି ଅଧିକାଂଶ ଧୂପ ନିଜର ବିଷାକ୍ତ ଉପାଦାନ ଯୋଗୁଁ ଆମର ଶତ୍ରୁ ସାଜିଛି ଯଦିଓ ଆମେ କୁଚିତ ସେକଥା ବୁଝିପାରୁଛୁ ।*

*ଧୂପ ତିଆରି ପାଇଁ ପ୍ରକୃତିଜାତ ଯେଉଁ କଞ୍ଚାମାଲ ସବୁ ଦରକାର, ଉତ୍ପାଦନ କମିବା ଅଥବା ଅନ୍ୟ କାରଣରୁ ସେଗୁଡ଼ିକର ଦର ବଢ଼ିଯାଉଛି ଯାହା ଫଳରେ କି ସେଥିରେ ପ୍ରସ୍ତୁତ ଧୂପ ମଧ ଶସ୍ତାରେ ବିକ୍ରି କରିବା ସମ୍ଭବ ହୋଇପାରୁନାହିଁ । ତେଣୁ ବାଧ ହୋଇ ଅନେକଙ୍କୁ ରାସାୟନିକ ବା କୃତିମ ଉପାଦାନରେ ଧୂପ ତିଆରି କରିବାକୁ ପଡୁଛି । ଅପର ପକ୍ଷରେ କେତେକ ବ୍ୟବସାୟୀ ଅଛନ୍ତି ଯେଉଁମାନେ ଅଧିକ ଲାଭ ପାଇବା ପାଇଁ ନିକୃଷ୍ଟ ବା କୃତ୍ରିମ ଉପାଦାନ (କୃତିମ ଅତର, ଇତ୍ୟାଦି) ମିଶାଇଥା'ନ୍ତି ଏବଂ ଏଭଳି ଧୂପ ପରିବେଶକୁ ପ୍ରଦୂଷିତ କରିବା ସହିତ ଆମର ସ୍ୱାସ୍ଥ୍ୟ ପାଇଁ କ୍ଷତିକାରକ ହୋଇଥାଏ, ବିଶେଷତଃ ଯଦି ତା'ର ଧୂଆଁ ଘର ଭିତରେ ବହୁ ସମୟ ଆବଦ୍ଧ ହୋଇ ରହେ ।*

*ପଜ ଛାଲି ନ ମିଳିଲେ ଏ ସମସ୍ୟା ଆହୁରି ଉତ୍କଟ ହେବ । Persea macarantha ବୋଲି ଗୋଟିଏ ଗଛ- ଯାହା ବର୍ତ୍ତମାନ ଓଡ଼ିଶାରେ ଅଛି କି ନାହିଁ, ଜଣାପଡୁନାହିଁ- ର ଛାଲି ଧୂପ-ପ୍ରସ୍ତୁତି-ଯୋଗ୍ୟ ଅଠା ପାଇବା ପାଇଁ ବହୁଳ ବ୍ୟବହୃତ ହେଉଥିଲା, ମାତ୍ର ସେ ଗଛର ସଂଖ୍ୟା କମିଯିବା ଫଳରେ ତା'ର ଛାଲି ଅଭାବରୁ ଭାରତୀୟ ଧୂପ ପ୍ରସ୍ତୁତକାରୀମାନେ ସଂକଟରେ ପଡ଼ିଛନ୍ତି । ଏଭଳି ସଂକଟବଶତଃ ହେଉ ଅଥବା ମନ୍ଦବୁଦ୍ଧି ବଶତଃ, ରାଉରକେଲାର କେତେକ ଧୂପ ପ୍ରସ୍ତୁତକାରୀ ଯେ ଅଠା ରୂପେ ଭାତକୁ ବ୍ୟବହାର କରୁଛନ୍ତି, ସେଥିରେ ବିଶେଷ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।*

ଫଳରେ କି ଗଛ ମରିଯାଏ । ଅପର ପକ୍ଷରେ ହାତୁଡ଼ିରେ ପିଟିବା ଦ୍ୱାରା ସାଧାରଣତଃ ପ୍ରଥମ ସ୍ତରଟି ହିଁ କେବଳ ଖଣ୍ଡ ଖଣ୍ଡ ହୋଇ ଝଡ଼ିପଡ଼ିଥାଏ ।

ତେବେ ଏ ପଦ୍ଧତି ଦୁଇଟି କ୍ଷେତ୍ରରେ ଅର୍ଥହୀନ ହୋଇପାରେ, ଯଥା : (୧) ଗଛ ଯଦି ତରୁଣ ଅବସ୍ଥାରେ ଥାଏ ଏବଂ ବହିର୍ସ୍ତରଟି କଞ୍ଚା ରହିଥାଏ ଏବଂ (୨) ହାତୁଡ଼ି ଆଘାତ ଯଦି ଖୁବ୍ ଜୋର୍ ହୁଏ (କାରଣ ସେଥିରେ ଅନ୍ତର୍ସ୍ତର ବି କ୍ଷତିଗ୍ରସ୍ତ ହୁଏ) ।

- କେବଳ ମୃତ ଗଛର ସଂପୂର୍ଣ୍ଣ ଛାଲି କଢ଼ାଯାଇପାରେ ।

* ଯଦି ଟାଙ୍ଗିଆ ଭଳି ଅସ୍ତ୍ର ଦ୍ୱାରା ହାଣି ଛାଲି ଛଡ଼ାଇବା ଅନିବାର୍ଯ୍ୟ ହୁଏ, ତା'ହେଲେ ଗଣ୍ଡିରୁ ନ ଛଡ଼ାଇ କୌଣସି ଗୋଟିଏ ବଡ଼ ଶାଖାରୁ ଛଡ଼ାଇଲେ ଦୈବାତ ଯଦି ବା ଶାଖାଟି ମରିଯାଏ, ତା'ହେଲେ ସୁଦ୍ଧା ଗଛ ମରିବ ନାହିଁ । ୨ୟତଃ, ଛାଲି ଛଡ଼ାଇବା ବେଳେ ଏପରି ଭାବେ ଛଡ଼ାଇବାକୁ ହେବ ଯେପରି କି ଅନ୍ତତଃ ୩ ଭାଗ ବଲ୍‌କଳ ଅକ୍ଷତ ହୋଇ ରହିବ । ଚାରି ଭାଗରୁ ଯେଉଁ ଏକ ଭାଗ ନିଆଯିବ, ତାହା ଗୋଟିଏ ସ୍ଥାନରୁ ନହୋଇ ୨/୩ଟି ସ୍ଥାନରୁ ନେଲେ ଭଲ (ଚିତ୍ର ଦ୍ରଷ୍ଟବ୍ୟ) । ତା' ପରେ ସେଇ କ୍ଷତ (ଛାଲି ଛଡ଼ାଯାଇଥିବା ଅଂଶ)ଗୁଡ଼ିକୁ ନଡ଼ା ଇତ୍ୟାଦିରେ ଘୋଡ଼ାଇ ବାନ୍ଧିଦେଲେ ଗଛକୁ ସୂର୍ଯ୍ୟକିରଣର ଆଘାତ ବିଶେଷ ବାଧେ ନାହିଁ। ନଡ଼ାରେ ପାଣି ଛିଞ୍ଚିଲେ ଆହୁରି ଭଲ।

* ଯେଉଁ ହାରରେ ପଜ ଓ ଜୟସଣ୍ଢାର ପ୍ରାକୃତିକ ବଂଶବିସ୍ତାର ହେଉଛି, ଅନେକ ଅଞ୍ଚଳରେ ତା' ଅପେକ୍ଷା ବହୁଗୁଣ ଅଧିକ ହାରରେ ଏଗୁଡ଼ିକୁ ହାଣି-ଅଥବା ମାରିଦିଆଯାଉଛି । ତେଣୁ କେବଳ ପ୍ରାକୃତିକ ବଂଶବିସ୍ତାର ଉପରେ ନିର୍ଭର ନକରି ଏମାନଙ୍କର ସଂଖ୍ୟା ବଢ଼ାଇବା ପାଇଁ ଆମେ ନିଜେ ଚେଷ୍ଟା କଲେ ଭଲ ହେବ ।

ମଞ୍ଜି କିମ୍ବା ଗଜାରୁ ଜୟସଣ୍ଢାର ବଂଶବିସ୍ତାର କରାଯାଇପାରେ । ଛାଇରେ ବି ଏସବୁ ଗଛ ଭଲ ବଢ଼େ ।

ପଜ ଗଛ ମଧ ମଞ୍ଜିରୁ ହୁଏ । ଶୁଣାଯାଏ ଯେ କଟାଯିବା ପରେ ଶାଳଗଛ ପରି ଏହାର ମଧ ଗଜା ବାହାରେ, କିନ୍ତୁ ଲେଖକ ଦେଖିଥିବା କଟା ଗଛଟିଏ ଗଜା ବିନା ହିଁ ମରିଯାଇଥିଲା ।

ତେବେ ଉଭୟ ପଜ ଓ ଜୟସଣ୍ଢା ଅପେକ୍ଷାକୃତ ଶୀଘ୍ର ଶୀଘ୍ର ବଢ଼ନ୍ତି ।

ଏ ଦୁଇ ଗଛର ବର୍ଣ୍ଣନା ସଂପର୍କରେ ବିଭିନ୍ନ ବହିରେ ମତଭେଦ ଦେଖାଯାଏ, ତେବେ ସ୍ଥାନୀୟ ଲୋକଙ୍କ ଠାରୁ ମିଳିଥିବା ତଥ୍ୟକୁ ଭିତ୍ତି କରି କୁହାଯାଇପାରେ ଯେ ପଜର ଫୁଲ ମାର୍ଚ୍ଚରୁ ମଇ ମାସ ଭିତରେ ତଥା ଫଳ ଜୁଲାଇ-ଅଗଷ୍ଟ ସୁଦ୍ଧା ଦେଖାଯାଉଥିବା ବେଳେ ଜୟସଣ୍ଢାର ଫୁଲ ଜୁନ-ଜୁଲାଇରେ ଏବଂ ଫଳ ସେପ୍ଟେମ୍ବର-ନଭେମ୍ବରରେ ଦେଖାଯାଏ। ପଜର ଉଭୟ ଛୋଟ ଓ ବଡ଼ ଦୁଇ ପ୍ରକାର ଆକାର ଦେଖାଯାଉଥିବା ବେଳେ ଜୟସଣ୍ଢା ବେଶ ବଡ଼ ଗଛ ହୋଇପାରେ।

ଜୟସଣ୍ଢାର କାଠ ସ୍ଥାୟୀ ହୁଏ, କିନ୍ତୁ ପଜ କାଠ ବେଶି ଦିନ ଯାଏ ନାହିଁ ଏବଂ ସେଥିରେ ଶୀଘ୍ର ପୋକ/ଫିମ୍ପି ଲାଗନ୍ତି । ତେବେ ପଜ କାଠ ଭଲ ଜାଳେଣୀ ହୁଏ ।

ପଜର ପତ୍ର ବା ଛାଲିକୁ ବାଟି ପାଣିରେ ମିଶାଇ ଖାଇଲେ ପତଳା ଝାଡ଼ା ବା ଆମାଶୟ ଆଦି ଭଲ ହୁଏ । ଜୟସଣ୍ଢା ଛାଲିର ବି ଏଭଳି ଗୁଣ ରହିଛି । ଉଭୟ ଗଛର ଛାଲି କଟା ଘା' ବା ଅନ୍ୟ ଘା'ରେ ଲଗାଇଲେ ଭଲ କାମ କରେ ବୋଲି ଲୋକେ କୁହନ୍ତି । ତା'ଛଡ଼ା, କବାଟ ଝରକାର କାଠ ଫାଟିଗଲେ ଏଇ ଛାଲିକୁ ବାଟି ସେଥିରେ ଲେପିଦେଲେ ଫାଟ ବନ୍ଦ ହୋଇଯାଏ ଏବଂ ପତ୍ରକୁ ଗାଈ ମଇଁଷି ଖାଇଥା'ନ୍ତି ।

ଜୟସଣ୍ଢା ଛେଲିକୁ ବାଟି ଗରମ କରି ବଥ ବା ବାଗୀ ଘା' ଉପରେ ଲଗାଇଲେ ସେସବୁ ଭଲ ହୋଇଥାଏ (କେହି କେହି ଛେଲି ସହିତ ଅନ୍ୟ ଉପାଦାନ ମଧ ମିଶାଇଥା'ନ୍ତି) । ତା'ଛଡ଼ା, ଉଭୟ ପଜ ଓ ଜୟସଣ୍ଢା ଛାଲି ଆଘାତଜନିତ ବ୍ୟଥା ଏବଂ ଆଣ୍ଠୁଡ଼ା ରାମ୍ପୁଡ଼ାରେ ମଧ ଉପକାର କରିଥାଏ । ଏପରିକି ହାଡ଼ ଭାଙ୍ଗିବା(ବିଶେଷତଃ, ପଶୁଙ୍କର)ରେ ମଧ ଏହାକୁ ଔଷଧ ରୂପେ ଲେପ ଦିଆଯାଏ । ତେବେ ଜୟସଣ୍ଢା ଛାଲି ବିଛା ବା ସାପ କାମୁଡ଼ାରେ ଉପଯୋଗୀ ବୋଲି ଥିବା ଧାରଣା ପରେ ଭୁଲ ପ୍ରମାଣିତ ହୋଇଛି ।

ଏ ଦୁଇ ପ୍ରକାର ଛାଲି ପାଇଁ ପ୍ରାଥମିକ ସଂଗ୍ରହକାରୀମାନେ କେଜି ପ୍ରତି ୫/୬ ଟଙ୍କା (କଞ୍ଚା) ଏବଂ ୧୦/୧୨ଟଙ୍କା (ଶୁଖିଲା) ହାରରେ ମୂଲ୍ୟ ପାଇଥିଲେ[୨୨] ଯଦିଓ ଏଗୁଡ଼ିକର ବଜାର ଦର ଏଇ ମୂଲ୍ୟର ପ୍ରାୟ ୪ ଗୁଣ ପର୍ଯ୍ୟନ୍ତ ହୋଇଥାଏ ।

ଭଲଭାବେ ନ ଶୁଖାଇ କଞ୍ଚା ଛାଲିକୁ ଘରେ ରଖିଲେ ଖରାପ ହୋଇଯାଏ । ତା'ଛଡ଼ା, ଉପରେ ଯେପରି ଦର୍ଶାଯାଇଛି, ଶୁଖିଲା ଛାଲିର ଦର ମଧ ଅଧିକ ହୁଏ ।

ଲେଧା ମେଧା ସମେତ ସମସ୍ତ ପ୍ରକାର ଗଛର ଛାଲି ସଂଗ୍ରହ ଓଡ଼ିଶା ସରକାର ନିଷିଦ୍ଧ ଘୋଷଣା କରିଛନ୍ତି, କିନ୍ତୁ ସରକାରୀ ନୀତିରେ ଥିବା ଗୁରୁତର ତ୍ରୁଟିବିଚ୍ୟୁତି ତଥା ରାଜନୈତିକ ହସ୍ତକ୍ଷେପ ଅନେକ ପ୍ରକାର ବିଡ଼ମ୍ବନା ସୃଷ୍ଟି କରିଛି । ବିଭିନ୍ନ ପ୍ରକାର ଛାଲି ମଧରେ ମସାଣି ଛାଲି ବର୍ତ୍ତମାନ ସର୍ବାଧିକ ଚାହିଦା ରଖିଛି ଏବଂ ଏହାର ବ୍ୟାପକ ଚୋରା କାରବାର ଚାଲିଛି । କେତେକ ସ୍ଥାନରେ ପୂର୍ବରୁ ପଟ୍ଟା (ଲିଜ) ପାଇଥିବା ବ୍ୟବସାୟୀମାନେ ଏଇ ଛାଲିର ସଂଗ୍ରହକୁ ଆଇନସମ୍ମତ ବୋଲି ପ୍ରମାଣିତ କରାଇବାରେ ମଧ ସଫଳ ହୋଇଥିଲେ । ସେ ଯାହା ହେଉ ନା କାହିଁକି, ଜନସଚେତନତା, ବୃକ୍ଷରୋପଣ ତଥା ସଂଗ୍ରହର ଉଚିତ ପଦ୍ଧତିର ଅନୁସରଣ ଦ୍ୱାରା ହିଁ ଲେଧା ମେଧା ଜାତୀୟ ଗଛକୁ ଲୁପ୍ତ ହେବାରୁ ରକ୍ଷା କରାଯାଇପାରିବ ।

---

୨୨. ଉତ୍ତର ଓଡ଼ିଶାର ଠାକୁରମୁଣ୍ଡା ଅଞ୍ଚଳରେ ଦୁଇ ପ୍ରକାର ପଜ ଛାଲି ସଂଗ୍ରହ ହେଉଥିଲା । ସେଗୁଡ଼ିକ ଭିତରୁ ଯେଉଁଟି ଉତ୍କୃଷ୍ଟ (ଭିତର ଅଂଶ ଅପେକ୍ଷାକୃତ କଳା), ସେଥିପାଇଁ ୫/୬ ଟଙ୍କା (କଞ୍ଚା) ମିଳୁଥିବା ବେଳେ ୨ୟ ଶ୍ରେଣୀର ଛାଲି (ଭିତର ଅଂଶ ଅପେକ୍ଷାକୃତ ଲାଲ) ପାଇଁ ୨/୩ ଟଙ୍କା ମିଳୁଥିଲା । ତେବେ ଏହି ୨ୟ ଶ୍ରେଣୀର ଛାଲିଟି ପ୍ରକୃତରେ ପଜର ନା ଅନ୍ୟ କୌଣସି ଗଛର, ସେ ବିଷୟ ସ୍ପଷ୍ଟ ହୋଇପାରିନାହିଁ ।

## ବିବେକୀ ଚୋର !

ପ୍ରାୟ ଦୁଇ ବର୍ଷ ତଳେ ମସାଣି ଛାଲିର ଚୋରା କାରବାର ରାଜ୍ୟରେ ଯେତେବେଳେ ପ୍ରବଳ ହୋଇଉଠିଲା, ସେତେବେଳେ ନୟାଗଡ଼ ଜିଲ୍ଲାର ଆଖୁପଦର ଅଞ୍ଚଳରେ ଜନସାଧାରଣଙ୍କ ଦ୍ୱାରା ସଂରକ୍ଷିତ ଜଙ୍ଗଲକୁ ଅନ୍ୟ କେତେକ ଅଞ୍ଚଳର ଲୋକ ପଶିଯାଇ ଜୟସଣ୍ଢା ଛାଲି ଚୋରି କରିନେଲେ । ପ୍ରଥମତଃ ସ୍ଥାନୀୟ ଲୋକେ ମସାଣି ଛାଲିର ବ୍ୟାବସାୟିକ ଚାହିଦା ସଂପର୍କରେ କିଛି ଜାଣି ନଥିଲେ, ତା'ପରେ ପୁଣି ଜଙ୍ଗଲରେ ଜଗୁଆଳି ବ୍ୟବସ୍ଥା ଯଥେଷ୍ଟ ନଥିଲା ଯାହାର ସୁଯୋଗ ଚୋରମାନେ ନେଲେ । ସେତେବେଳେ ବେପାରୀ କଞ୍ଚା ଛାଲି ପାଇଁ ମଧ ଦଶ ଟଙ୍କା ଦେଉଥିଲା (କେଜି ପ୍ରତି) । ତେବେ ଏମାନଙ୍କ ଭିତରୁ କେତେଜଣ ଧରାପଡ଼ିଲେ ଏବଂ ପ୍ରତ୍ୟେକଙ୍କୁ ୨୦୦ ଟଙ୍କା ଜୋରିମାନା କରାଗଲା ।

ପ୍ର. (ନାମ ଗୋପନ ରଖାଯାଇଛି) ଜଣେ ସ୍ଥାନୀୟ ଗ୍ରାମବାସୀ । ଯୁଆଳି ପଡ଼ି ପଡ଼ି ତାଙ୍କ ବଳଦର 'କାନ୍ଧ'ରେ ବିଣ୍ଡି ଧରିବା ପରି ଘା' ହୋଇଯିବାରୁ କେହି ଜଣେ ତାଙ୍କୁ କହିଲେ ଯେ କିଛି ଜୟସଣ୍ଢା ଛାଲି ଆଣି ଭଲଭାବେ ବାଟିବା ପରେ ଗରମ କରି ସେଇ ବିଣ୍ଡି ଉପରେ ଲଗାଇଲେ ଘା' ଭଲ ହୋଇଯିବ । ପ୍ର. ଜାଣିଥିଲେ ଯେ ଜଙ୍ଗଲ ସୁରକ୍ଷା ସମିତି ଛାଲି ଆଣିବାକୁ ନିଷେଧ କରିଛି, କିନ୍ତୁ ବଳଦର ଚିକିତ୍ସା ପାଇଁ ସେ ଅନ୍ୟମାନଙ୍କୁ ଲୁଚି ଜଙ୍ଗଲକୁ ଗଲେ ଓ ଜୟସଣ୍ଢା ଛାଲି ନେଇଆସିଲେ । କିନ୍ତୁ ଯେହେତୁ ସେ ଶୁଣିଥିଲେ ଯେ ଛାଲି ନେବା ଯୋଗୁଁ ଗଛ ମରିଯାଉଛି, ତେଣୁ ମୂଳରୁ କିଛି ଛାଡ଼ି ଉପରକୁ ଏବଂ ଗଣ୍ଡିର ଗୋଟିଏ ଦିଗରୁ ହିଁ ସେ ଛାଲି ଛଡ଼ାଇଥିଲେ; ଅର୍ଥାତ, ନୀତିଗତ ଭାବେ ସେ ଚୋରି କରିଥିଲେ ମଧ ବିବେକକୁ ଜଳାଞ୍ଜଳୀ ଦେଇ ନଥିଲେ । ଛାଲିକୁ ବାଟି ଦୁଇ/ତିନି ଥର ଲଗାଇବା ପରେ ବଳଦର ବିଣ୍ଡି ଘା' ସଂପୂର୍ଣ୍ଣ ଭଲ ହୋଇଗଲା ।

***

# ଲାଖ

କେତେ ଜଣ ବା ବିଶ୍ୱାସ କରିବେ ଯେ ପାଦର ଅଳତା ଏବଂ ମହାଭାରତ ବର୍ଣ୍ଣିତ ଜତୁଗୃହ ଗୋଟିଏ ଉପାଦାନରୁ ହିଁ ତିଆରି ? ଅନ୍ୟମାନଙ୍କ କଥା ଭିନ୍ନ, କିନ୍ତୁ ଯେଉଁ ଲାଖରା/ଶଙ୍ଖାରୀ ଜାତି ଲାଖକୁ ନେଇ ଜୀବିକା ନିର୍ବାହ କରିଆସୁଛନ୍ତି, ସେମାନଙ୍କ ଭିତରୁ ବି ଅନେକେ ମାନିବାକୁ ନାରାଜ ଯେ ଅଳତା ଲାଖରୁ ତିଆରି ହେଉଥିଲା ।[୨୩] ଲାଖର ସ୍ୱର୍ଣ୍ଣଯୁଗ ଚାଲିଯାଇଛି ବୋଲି ଆଜି ତାକୁ ନେଇ ଏତେ ସନ୍ଦେହ ବା ଅବିଶ୍ୱାସ, କିନ୍ତୁ ଦିନେ ଆଠମଲ୍ଲିକ ଭଳି ଗଡ଼ଜାତର ଲାଖଚାଷୀମାନେ ବର୍ଷକୁ ଦୁଇଥର ମାତ୍ର ଲାଖ ଅମଳ କରି ଏତେ ଟଙ୍କା ପାଉଥିଲେ ଯେ ଅନ୍ୟ ଜୀବିକା ଆଶ୍ରୟ କରିବା ସେମାନଙ୍କ ପାଇଁ କ୍ୱଚିତ ଦରକାର ହେଉଥିଲା ।

ଗେଣ୍ଡା ଯେମିତି ନିଜ ସୁରକ୍ଷା ପାଇଁ ଖୋଳଟିଏ ତିଆରି କରିଥାଏ, ଓଡ଼ଶ ଜାତୀୟ ଗୋଟିଏ ଛୋଟ ପୋକ ନିଜ ପାଇଁ ସେଇଭଳି ସୁରକ୍ଷା କବଚଟିଏ ଗଢ଼ିବା ଉଦ୍ଦେଶ୍ୟରେ ଦେହରୁ ଏକ ପ୍ରକାର ରସର କ୍ଷରଣ କରାଇଥାଏ । ସେଇ ରସ ଶୁଖି ଶକ୍ତ ହୋଇଗଲେ ଲାଖରେ ପରିଣତ ହୁଏ ।

ବହୁ ଜାତିର ଲାଖ ପୋକ ଦେଶର ଭିନ୍ନ ଭିନ୍ନ ଅଞ୍ଚଳରେ ଦେଖାଯାଇଥା'ନ୍ତି ଏବଂ ସେମାନଙ୍କ ଭିତରେ ଥିବା ପ୍ରକାର-ଭେଦ ତଥା ସେମାନେ ଆଶ୍ରୟ କରୁଥିବା ଗଛମାନଙ୍କର ପ୍ରକାର-ଭେଦ ଅନୁଯାୟୀ ସେମାନଙ୍କ ଦ୍ୱାରା ଉତ୍ପାଦିତ ଲାଖର ଗୁଣାତ୍ମକ ମାନ (quality) ମଧ ଭିନ୍ନ ଭିନ୍ନ ହୋଇଥାଏ ।

ଯେଉଁ ଜାତିର ଲାଖ ପୋକ ଓଡ଼ିଶାରେ ଦେଖାଯାଏ, ପ୍ରାପ୍ତବୟସ୍କ ହେଲେ ତା'ର ଲମ୍ବ ଗୋଟିଏ ଇଞ୍ଚର ଷୋହଳ ଭାଗରୁ ଏକଭାଗ ପର୍ଯ୍ୟନ୍ତ ହୋଇଥାଏ । ପୁଂ-କୀଟ ଓ ସ୍ତ୍ରୀ-କୀଟ ଏଭଳି ଦୁଇ ପ୍ରକାର ଲାଖ ପୋକ ରହିଥା'ନ୍ତି ଏବଂ ଅଧିକାଂଶ ଲାଖ ସ୍ତ୍ରୀ-କୀଟ ହିଁ ସୃଷ୍ଟି କରିଥାଏ ।

ଗଛର ରସ ପିଇ ଲାଖ ପୋକ ବଞ୍ଚିଥାଏ ଏବଂ ଭିନ୍ନ ଭିନ୍ନ ଜାତିର ଲାଖ ପୋକଙ୍କର ଭିନ୍ନ ଭିନ୍ନ ପସନ୍ଦର ଗଛ ରହିଥାଏ । ସାଧାରଣତଃ ଆମର ଚାଷୀମାନେ ଦୁଇ ଜାତିର ଲାଖ ପୋକଙ୍କର ପସନ୍ଦ ଚିହ୍ନିଛନ୍ତି, ସେଗୁଡ଼ିକ ହେଉଛି :

କୁସୁମୀ ଲାଖର ପୋକ : କୁସୁମ ତଥା ଖଇର ଗଛ

ରଙ୍ଗିଣୀ ଲାଖର ପୋକ : ପଳାଶ, ବରକୋଳି, ହରଡ଼ (ଇତ୍ୟାଦି) ।[୨୪]

---

୨୩. ସଂସ୍କୃତରେ ଲାଖକୁ 'ଲାକ୍ଷା' ବୋଲି କୁହନ୍ତି ଏବଂ ଅଳତାକୁ କୁହନ୍ତି 'ଲାକ୍ଷାରସ' । ଆମ କାବ୍ୟ କବିତାରେ ବି ଅଳତାଯୁକ୍ତ ସ୍ତ୍ରୀ ପାଦକୁ 'ଲାକ୍ଷାରଞ୍ଜିତ ପଦ' ବୋଲି କୁହାଯାଇଛି । ତେବେ ଆଜିକାଲି ବଜାରରେ ଯେଉଁ ଅଳତା ମିଳୁଛି, ତାକୁ ଲାଖରୁ ତିଆରି କରାଯାଉଛି ନା ରାସାୟନିକ ପଦାର୍ଥରୁ, ସେକଥା ସ୍ପଷ୍ଟ ହୋଇପାରିନାହିଁ ।

୨୪. ଆକାଶିଆ, ବରକୋଳି, ଭାଲିଆ ଏବଂ ଖଇର ଭଳି କେତେକ ଗଛରେ କୁସୁମୀ ତଥା ରଙ୍ଗିଣୀ : ଉଭୟର ଚାଷ କରାଯାଇପାରେ ।

ଏଇ ପୋକମାନେ ପ୍ରତିବର୍ଷ ପ୍ରାୟ ଦୁଇଟି ଜୀବନଚକ୍ର ଅତିକ୍ରମ କରିଥା'ନ୍ତି, ଅର୍ଥାତ୍ ଗୋଟିଏ ବର୍ଷରେ ଦୁଇଟି ପିଢ଼ିର ପୋକ ଲାଖ ଉତ୍ପାଦନ କରିଥା'ନ୍ତି । ସେଥିପାଇଁ ଗୋଟିଏ ଗଛରୁ ବର୍ଷକୁ ସାଧାରଣତଃ ୨ଥର ଲାଖ ଅମଳ କରାଯାଇଥାଏ ।

ପୂର୍ବରୁ କୁହାଯାଇଛି ଯେ ଗଛର ରସ ହିଁ ଲାଖ ପୋକର ଖାଦ୍ୟ । ନିଜ ଶୁଣ୍ଢକୁ ଗଛରେ ଫୋଡ଼ି ଏଇ ରସ ସେ ସଂଗ୍ରହ କରିଥାଏ । ତେଣୁ ତା'ର ବଞ୍ଚିବା ପାଇଁ ଦରକାର ହୁଏ କଅଁଳ ତଥା ରସାଳ ଶାଖା ପ୍ରଶାଖା । ଗଛରେ ଏଭଳି ଶାଖା ପ୍ରଶାଖା ସବୁବେଳେ ଆବଶ୍ୟକ ପରିମାଣରେ ନଥାଏ, ତେଣୁ ଲାଖ ଚାଷୀ ଗଛ ଡାଳମାନ କିଛି ପରିମାଣରେ କାଟି ଦିଅନ୍ତି ଯାହାଫଳରେ କି ଏଭଳି ଶାଖା ପ୍ରଶାଖା କଅଁଳି ଉଠେ । ଏଇ ପଦ୍ଧତିକୁ ଇଂରାଜୀରେ pruning ବୋଲି କୁହନ୍ତି ଏବଂ ଓଡ଼ିଆରେ କେହି କେହି 'ଡାଳ ଉଚ୍ଛିବା' ବୋଲି ମଧ କହିଥା'ନ୍ତି । ଆମେ ତାକୁ ଶାଖାସଂସ୍କାର ବୋଲି ମଧ କହିପାରିବା । ଡାଳ ଉଚ୍ଛିବାର ପ୍ରାୟ ଦେଢ ବର୍ଷ ପରେ (କେତେକ କ୍ଷେତ୍ରରେ ହୁଏତ ତା'ର ଯଥେଷ୍ଟ ପୂର୍ବରୁ) ଆବଶ୍ୟକ ପରିମାଣର କଅଁଳ ଶାଖାମାନ ବିହନ ଛାଡ଼ିବାର ଉପଯୋଗୀ ହୁଏ ।

ଶାଖାସଂସ୍କାରକୁ ନେଇ ଅନେକଗୁଡ଼ିଏ ବୈଜ୍ଞାନିକ ବିଧିନିଷେଧ ରହିଛି; ସେଗୁଡ଼ିକୁ ଅନୁସରଣ କରାଗଲେ ହିଁ ସର୍ବୋତ୍ତମ ସଫଳତା ସମ୍ଭବ ହୋଇପାରେ । ସେଇ ନିୟମଗୁଡ଼ିକ ଏଠାରେ ଦିଆଯାଉଛି :

- କଅଁଳ ଗଜାଗୁଡ଼ିକୁ କଟାଯିବ ନାହିଁ ।
- ୫ ସେ.ମି. କିମ୍ବା ଅତି ବେଶିରେ ୭ ସେ.ମି. (ପ୍ରାୟ ୩ ଇଞ୍ଚ) ବ୍ୟାସ (ମୋଟ)ର ଡାଳ କଟାଯାଇପାରିବ, ତା' ଠାରୁ ଅଧିକ ବ୍ୟାସର ନୁହେଁ (କିନ୍ତୁ କମ୍ ବ୍ୟାସର ହୋଇପାରେ) ।
- ମୃତ ଓ ରୋଗାକ୍ରାନ୍ତ ଶାଖାଗୁଡ଼ିକୁ କାଟି ଫୋପାଡ଼ି ଦେବାକୁ ହେବ ।
- ଡାଳ ଯେଉଁଠାରୁ କେନା ମେଲିବା ଆରମ୍ଭ କରଥାଏ (fork), ତା'ର ୬ ଇଞ୍ଚ ଉପରକୁ କଟାଯିବ ।
- ବୃକ୍ଷଚୂଡ଼ା (crown ବା କାଣ୍ଡ/ଗଣ୍ଡି ଉପରେ ଥିବା ଗହଳ/ଝଙ୍କାଳିଆ ଅଂଶ)ର ଉପର ଭାଗରେ ଡାଳ ଉଚ୍ଛିବାର ପରିମାଣ କମ୍ ରହିବ ।
- ତେର୍ଛା (slanting) ଏବଂ ଭୂସମାନ୍ତର (horizontal) ହୋଇ ରହିଥିବା ଡାଳମାନଙ୍କୁ ଯଥାସମ୍ଭବ ଶେଷମୁଣ୍ଡରୁ ହିଁ କାଟିବାକୁ ହେବ ।

ଗଛର ଅବସ୍ଥା ତଥା ପ୍ରକାର ଉପରେ ମଧ ଡାଳ ଉଚ୍ଛିବାର ମାତ୍ରା ନିର୍ଭର କରେ କାରଣ ଡାଳ କାଟିଦିଆଯିବା ଦ୍ୱାରା ଗଛ ଉପରେ ଯେଉଁ ଚାପ ପଡ଼େ, ତାକୁ ସହିବାର ଶକ୍ତି ସବୁ ଗଛରେ ସମାନ ନଥାଏ । ତା'ଛଡ଼ା, ଗୋଟିଏ ଗଛରେ ହିଁ ଭିନ୍ନ ଭିନ୍ନ ଅବସ୍ଥାରେ ଭିନ୍ନ ଭିନ୍ନ ମାତ୍ରାର ଶାଖାସଂସ୍କାର ଦରକାର

ହୁଏ । ସୁସ୍ଥ ଗଛଗୁଡ଼ିକ ପାଇଁ ଏହାର ମାତ୍ରା କମ୍ ହୋଇଥିବା ବେଳେ ବୁଢ଼ା ଓ ରୋଗିଣା ଗଛମାନଙ୍କ ପାଇଁ ଭୀଷଣ ମାତ୍ରାର ଶାଖାସଂସ୍କାର (heavy pruning) ଦରକାର ହୋଇଥାଏ ।

ଗଛ ଯେତେବେଳେ ଏକପ୍ରକାର ଆଭ୍ୟନ୍ତରୀଣ ନିଷ୍କ୍ରିୟତା ଭିତରେ ରହିଥାଏ (vegitatively inactive) କିମ୍ବା ବଢ଼ିବା (କଅଁଳିବା)କୁ ଆରମ୍ଭ କରିବାର ଠିକ୍ ପୂର୍ବାବସ୍ଥାରେ ରହିଥାଏ, ସେତେବେଳେ- ଅର୍ଥାତ୍ ପ୍ରାୟ ଶୀତଋତୁର ଦ୍ୱିତୀୟାର୍ଦ୍ଧ ବେଳକୁ, ଶାଖାସଂସ୍କାର ଆରମ୍ଭ କରିବାର ଉଚିତ ସମୟ ଥାଏ । ଭିନ୍ନ ଭିନ୍ନ ଗଛ ପାଇଁ ଶାଖାସଂସ୍କାରର କେତେକ ନିର୍ଦ୍ଦିଷ୍ଟ ସମୟ ରହିଛି, ଯଥା :

ପଳାଶ :

| | |
|---|---|
| କାର୍ତ୍ତିକ ମାସର ଅମଳ ପାଇଁ | ଫେବୃଆରୀ |
| ଜ୍ୟେଷ୍ଠ ମାସର ଅମଳ ପାଇଁ | ମାର୍ଚ୍ଚ ଶେଷ |

ବରକୋଳି :

| | |
|---|---|
| କାର୍ତ୍ତିକ ମାସର ଅମଳ ପାଇଁ | ଫେବୃଆରୀ-ମାର୍ଚ୍ଚ |
| ଜ୍ୟେଷ୍ଠ ମାସର ଅମଳ ପାଇଁ | ଏପ୍ରିଲ-ମଇ |

କୁସୁମ :

| | |
|---|---|
| ମାଘ ମାସର ଅମଳ ପାଇଁ | ଜାନୁଆରୀ-ଫେବୃଆରୀ |
| ଜ୍ୟେଷ୍ଠମାସର ଅମଳ ପାଇଁ | ଜୁନ-ଜୁଲାଇ |

ଖଇର :

| | |
|---|---|
| ଶୀତ ଋତୁର ଅମଳ ପାଇଁ | ୧୫ ଏପ୍ରିଲରୁ ୧୫ ମଇ |
| ଗ୍ରୀଷ୍ମ ଋତୁର ଅମଳ ପାଇଁ | ଫେବୃଆରୀ |

ଶାଖାସଂସ୍କାରର ଉଚିତ ସମୟରେ ଏତେ ପ୍ରଭେଦର କାରଣ ହେଉଛି ସବୁ ଗଛ ସମାନ ଭାବରେ ବଢ଼ିନଥାନ୍ତି । ପଳାଶ ଓ ବରକୋଳି ଭୀଷଣ ମାତ୍ରାର ଶାଖାସଂସ୍କାର ସହି ପାରନ୍ତି ଏବଂ ଶୀଘ୍ର ଶୀଘ୍ର ବଢ଼ିଥା'ନ୍ତି । କିନ୍ତୁ କୁସୁମ ଗଛ ଏତେ ପ୍ରାଣବନ୍ତ ନୁହେଁ, ତେଣୁ ତା' ପାଇଁ କମ୍ ମାତ୍ରା ଦରକାର ହୁଏ । ଶାଖାସଂସ୍କାର ପରେ କଅଁଳ ଶାଖାଗୁଡ଼ିକ କୀଟ ସଞ୍ଚରଣର ଉପଯୋଗୀ ହେବା ପାଇଁ କୁସୁମ ଗଛ କ୍ଷେତ୍ରରେ ପ୍ରାୟ ଦେଢ଼ବର୍ଷ ଲାଗିଯାଏ ।

ବିହନ ଉପଯୋଗୀ ଲାଖକୁ କୀଟଲାଖ (brood lac) ବୋଲି କହନ୍ତି କାରଣ ଏଥିରେ ଲାଖ ପୋକମାନେ ରହିଥା'ନ୍ତି । ଯେଉଁ ଡାଳ/ଶାଖାରେ ଲାଖ ପୋକ ନିଜର ବସା କରିଥାଏ, ସେଇ ଶାଖା ଉପରେ ଲାଖର ପରସ୍ତ ବସିଯାଏ । ସଂପୂର୍ଣ୍ଣ କଠିନ ନ ହେବା ପର୍ଯ୍ୟନ୍ତ ସେଇ ଅଂଶଗୁଡ଼ିକୁ ଅଙ୍ଗୁଳିରେ

ଚିପିଲେ ତତ୍‌କ୍ଷଣାତ୍ ଲାଲରଙ୍ଗ ଲାଗିଯାଏ । ତା' ଭିତରେ ଲାଖ ପୋକମାନେ ରହିଥା'ନ୍ତି । ଏଇଭଳି ଡାଳମାନଙ୍କୁ ଖଣ୍ଡ ଖଣ୍ଡ କରି କାଟି (ଲାଖ ଜମିଥିବା ଅଂଶର ପରସ୍ପର ବିପରୀତ ମୁଣ୍ଡରୁ କାଟି ଦିଆଯାଏ) ଛୋଟ ଛୋଟ ବିଡ଼ା କରାଯାଏ ଏବଂ କଅଁଳ ଶାଖାମାନଙ୍କରେ ବାନ୍ଧି ଦିଆଯାଏ । ତା'ପରେ ସେଥିରୁ ଲାଖ ପୋକମାନେ ବାହାରିଯାଇ କଅଁଳ ଶାଖାକୁ ଚାଲିଯା'ନ୍ତି । ଏହାକୁ 'କୀଟ ସଞ୍ଚରଣ' (inoculation ବା infection) କୁହାଯାଏ ।

ବିହନ ଛାଡ଼ିବା ବା କୀଟ ସଞ୍ଚରଣର ସମୟ ଗଛ ଅନୁଯାୟୀ ଭିନ୍ନ ଭିନ୍ନ ହୋଇଥାଏ, ଯଥା :

କୁସୁମ ଗଛ :

ମାଘ ମାସର ଅମଳ ପାଇବା ପାଇଁ : ଜୁନ୍-ଜୁଲାଇ

ଜ୍ୟେଷ୍ଠ ମାସର ଅମଳ ପାଇବା ପାଇଁ ଜାନୁଆରୀ-ଫେବୃଆରୀ

ଅନ୍ୟ ଗଛ :

ଗ୍ରୀଷ୍ମ ଋତୁର ଅମଳ ପାଇଁ : ଅକ୍ଟୋବର

ଶୀତ ଋତୁର ଅମଳ ପାଇଁ : ଜୁନ-ଜୁଲାଇ[୨୫]

କୀଟ ଲାଖ ସଂଗ୍ରହ କରିବାର ମଧ ଉଚିତ ସମୟ ରହିଛି । ଲାଖ ପୋକମାନ ବାହାରି ଯିବାକୁ ପ୍ରସ୍ତୁତ ହେଉଥିବା ବେଳେ ଏହା ସଂଗ୍ରହ କରାଯାଏ । ଏଇ ସମୟ ଆସିଲେ ଲାଖ ଉପରେ ହଳଦିଆ ରଙ୍ଗର ଦାଗ/ବିନ୍ଦୁମାନ ଦେଖାଦେବାକୁ ଲାଗେ ଏବଂ କ୍ରମେ ସେଗୁଡ଼ିକର ଆକାର ବଢ଼ିବା ସହିତ ରଙ୍ଗ ମଧ ବଦଳିଯାଏ, ଅର୍ଥାତ କମଳା ରଙ୍ଗର ହୋଇଯାଏ । ଏଇ ଲକ୍ଷଣ ଦେଖି ଚିହ୍ନି ହୁଏ ଯେ ଲାଖ ବିହନ ପାଇଁ ସଂଗ୍ରହ ଉପଯୋଗୀ ହୋଇଗଲାଣି ।

ବିହନ ନିର୍ବାଚନରେ ନିମ୍ନ ବିଷୟଗୁଡ଼ିକ ପ୍ରତି ଦୃଷ୍ଟି ରଖାଯିବା ଦରକାର :

- କେବଳ ସୁସ୍ଥ ଗଛର ସୁସ୍ଥ ବିହନ[୨୬] ହିଁ ନିଆଯିବ ।
- ବିହନ-କାଠିରେ ଲାଖର ଆସ୍ତରଣ ବହଳ ହୋଇଥିବ ଏବଂ ଅବିଚ୍ଛିନ୍ନ ରହିଥିବ (ଅର୍ଥାତ୍, ମଝିରେ ମଝିରେ ଛାଡ଼ି ଯାଇନଥିବ) ।
- ସେଥିରେ ପ୍ରଚୁର ପରିମାଣରେ ଧଳା ଲୋମ ପରି ଅଂଶମାନ ରହିଥିବ ଏବଂ କମଳା ରଙ୍ଗର ଦାଗମାନ ମଧ ଥିବ ।

---

୨୫. ପଳାଶ ଗଛରେ ଜୁଲାଇ ମାସର କୀଟ ସଞ୍ଚରଣ (କୃତ୍ରିମ) ନ କରାଯିବା ହିଁ ଭଲ ।

୨୬. ରୋଗ ପୋକ ଦ୍ୱାରା ଆକ୍ରାନ୍ତ ବା ନଷ୍ଟ ବିହନ ବିଭିନ୍ନ ଲକ୍ଷଣରୁ ଜଣାଯାଏ । ଯଥା : ଲାଖ ପୋକ ଯଦି ଅଧିକ ସଂଖ୍ୟାରେ ମରିଥା'ନ୍ତି, ତା'ହେଲେ ବିହନର ରଙ୍ଗ କଳା ପଡ଼ିଯାଏ ।

- ଲାଖର ଆସ୍ତରଣମାନ ଗୋଟିଏ ଉପରେ ଗୋଟିଏ ଚଢ଼ିଯାଇନଥିବେ ।
- ବିହନ-କାଠିର ଲମ୍ବ ୮ରୁ ୧୨ ଇଞ୍ଚ ଭିତରେ ହୋଇଥିବ ଏବଂ ସେଥିରେ ଲାଖରହିତ ଅଂଶ (ପତ୍ର ଆଦି) ନଥିବ ।
- ବିହନ (କାଠି) ଅପରିଷ୍କାର ନଥିବ ।

ବିହନର ପରିମାଣ ଅତି ବେଶି ବା ଅତି କମ୍ ହେଲେ ଅସୁବିଧା ହୁଏ । ଅତି ବେଶି ହେଲେ ଡାଳ ଅନୁପାତରେ ଲାଖ ପୋକଙ୍କ ସଂଖ୍ୟା ଅଧିକ ହୋଇଯାଏ ଏବଂ ଏକ କେଜି ଚାଉଳକୁ ଶହେ ଲୋକ ଭଳି ଅବସ୍ଥା ଦେଖାଦିଏ । ଏଭଳି କ୍ଷେତ୍ରରେ ଭଲ ଲାଖ ହୁଏ ନାହିଁ । ଅତି କମ୍ ବିହନ ହେଲେ ମଧ ଯଥେଷ୍ଟ ଅମଳ ମିଳେ ନାହିଁ । ଗଛ ଦେଖି ବିହନ ପରିମାଣ ସ୍ଥିର କରାଯାଏ ଏବଂ ଗୋଟିଏ ପ୍ରଧାନ ଶାଖାରେ ଗୋଟିଏ ବିଡ଼ା ବାନ୍ଧି ଦେଲେ ସେଥିରୁ ବାହାରିଥିବା ଉପଶାଖାଗୁଡ଼ିକରେ କୀଟ ସଞ୍ଚରଣ ହୋଇଯାଏ ।

ନିମ୍ନ ସାରଣୀରୁ ବିହନର ଉଚିତ ପରିମାଣ ସଂପର୍କରେ କିଛି ଆଭାସ ମିଳିବ :

ଗଛ ଯଦି ମଧମ ଧରଣର ହୋଇଥାଏ (ଅର୍ଥାତ୍, ଅତି ବଡ଼ ଓ ଖୁବ୍ ଝଙ୍କାଳିଆ ଅଥବା ଛୋଟ ହୋଇନଥାଏ), ତା'ହେଲେ :

| | |
|---|---|
| ପଳାଶ | ୫୦୦ ଗ୍ରାମରୁ ୧ କେଜି |
| ବରକୋଳି | ୧ ରୁ ୨ କେଜି |
| ଖଇର | ୧ ରୁ ୨ କେଜି |
| କୁସୁମ | ୫ ରୁ ୧୦ କେଜି |

ଡାଳ ଖୁବ୍ ବଡ଼ ହେଲେ ଅଥବା ବିହନ-କାଠି ଖୁବ୍ ଛୋଟ ଥିଲେ ବିଡ଼ା କରି ବାନ୍ଧିବାର ଆବଶ୍ୟକତା ପଡ଼େ । ନଚେତ୍ ଗୋଟିଏ କାଠି ବାନ୍ଧିଲେ ବି ଚଳିଯାଇପାରେ ।

ବିହନ-କାଠିକୁ ସିଧା ଅର୍ଥାତ ଡାଳ ସହିତ ସମାନ୍ତରାଳ କରି ବାନ୍ଧିବା ବେଶି ଭଲ କାରଣ ଆଡ଼ୁଆ କରି ବାନ୍ଧିଲେ ବା ଦୁଇ ଡାଳରେ ଦୁଇଟି ମୁଣ୍ଡ ବାନ୍ଧିଲେ ଲାଖ ପୋକଗୁଡ଼ିକ ପବନରେ ଉଡ଼ିଯିବା ଅଥବା ବର୍ଷାରେ ଧୋଇଯିବାର ଆଶଙ୍କା ବଢ଼ିଯାଏ ।

ଯେଉଁଠାରେ କେନା ବା ପ୍ରଶାଖାମାନ ବାହାରିଥାଏ, ସେଇଠାରେ ହିଁ ବିହନ-କାଠି ବାନ୍ଧି ଦିଆଯାଏ । ଲାଖ ପୋକମାନେ କ୍ରମଶଃ ଉପରକୁ (upwards) ସଞ୍ଚରିତ ହେବାର ଅଭ୍ୟାସ ରଖିଥା'ନ୍ତି, ତେଣୁ ବିହନ-କାଠିର ଉପରକୁ କଅଁଳ ପ୍ରଶାଖାମାନ ରହିଥିବା ଦରକାର ।

ଯେଉଁ ଡାଳରେ ବିହନ ବନ୍ଧାଯିବ, ତା' ସଂପର୍କରେ ନିମ୍ନ ବିଧିନିଷେଧମାନ ରହିଛି :

- ପାଖରେ ଯଦି ଛନ୍ଦି ହୋଇ ରହିଥିବା ଡାଳ ଅଥବା ମଲାଗଜାମାନ ଥାଏ, ତା'ହେଲେ ସେଗୁଡ଼ିକୁ ବାହାର କରି ଦିଆଯାଏ ।
- ଗଜା (କଅଁଳିଥିବା ଶାଖା)ର ଅଗ ଯଦି ମରିଯାଇଥାଏ କିମ୍ବା ତାକୁ ପୋକ ଖାଇଥାଏ, ତା'ହେଲେ ତାକୁ ବାଦ୍ ଦିଆଯିବ ।
- ପତ୍ରରେ ଫିମ୍ପି ଲାଗିଥିଲେ (ପତ୍ର ଉପରେ କଳା କଳା ଦାଗ/ବିନ୍ଦୁ ଦେଖାଯାଏ), ପତ୍ରର ପରିମାଣ କମ୍ ଥିଲେ କିମ୍ବା ବିକାଶ ଭଲ ଭାବରେ ହୋଇ ନପାରିଥିଲେ ସେଭଳି ଡାଳ ଉପଯୁକ୍ତ ହେବ ନାହିଁ ।
- ଅତି ଗହଳ ପତ୍ର ଥିଲେ କିଛି ପତ୍ର କାଢ଼ି ଦେବାକୁ ହେବ ।
- ଚେର ସଂଗ୍ରହ କରୁଥିବା ରସ ପ୍ରଥମେ ଗଛର ଗଣ୍ଡି ଦେଇ ଉପର ଡାଳଗୁଡ଼ିକୁ ପହଞ୍ଚିଥାଏ । ତେଣୁ ଗଣ୍ଡିରୁ ବାହାରିଥିବା ଗଜାମାନ କୀଟ ସଞ୍ଚରଣ ପାଇଁ ଅଧିକ ଉପଯୋଗୀ ହୋଇଥାଏ ।
- ଡାଳଟି ଅତି ଛୋଟ ହୋଇ ନଥିବ ଏବଂ ମାଟିର ଅତି ପାଖରେ ନଥିବ ।

କୁସୁମ ଗଛରେ କେବଳ କୁସୁମ ତଥା ଖଇର ଗଛରୁ ସଂଗୃହୀତ ବିହନ ପ୍ରୟୋଗ କରାଯିବା ଭଲ । ପଳାଶ ଗଛ ପାଇଁ ପଳାଶ ଓ ବରକୋଳି ଗଛର ବିହନ ତଥା ବରକୋଳି ଗଛ ପାଇଁ କୁସୁମ, ପଳାଶ ଓ ବରକୋଳି ଗଛର ବିହନ ଉପଯୁକ୍ତ ହୋଇଥାଏ । ଖଇର ଗଛ ପାଇଁ କେବଳ କୁସୁମ ଓ ଖଇର ଗଛର ବିହନ ଉପଯୁକ୍ତ ହୁଏ, କିନ୍ତୁ ଖୁବ୍ ଭଲ ଫଳ ମିଳେ ଯଦି କୁସୁମ ବିହନକୁ ଖଇର ଗଛରେ ବଢ଼ାଇ ପୁଣି ଖଇର ଗଛର ସେ ବିହନକୁ କୁସୁମ ଗଛରେ ପ୍ରୟୋଗ କରାଯାଏ ଏବଂ ବିହନ-ଚକ୍ରର ଏ ପଦ୍ଧତି ଅବ୍ୟାହତ ରଖାଯାଏ ।

କୃତ୍ରିମ ବା ମନୁଷ୍ୟକୃତ କୀଟ ସଞ୍ଚରଣ (artificial inoculation)ର ଏଭଳି ପଦ୍ଧତି ପରିଶ୍ରମ ସାପେକ୍ଷ, ସମୟସାଧ ତଥା ଖର୍ଚ୍ଚ ସାପେକ୍ଷ, କିନ୍ତୁ ଏଥିରେ ଗଛର ବିଭିନ୍ନ ଡାଳରୁ ପ୍ରାୟ ଗୋଟିଏ ସମୟରେ ହିଁ ଅମଳ ସମ୍ଭବ ହୋଇଥାଏ ଏବଂ ଶତ୍ରୁକୀଟର ପ୍ରଭାବ କମ୍ କରିବା ମଧ ସମ୍ଭବ ହୋଇପାରେ । ଗୋଟିଏ ଅଞ୍ଚଳରେ ୫/୬ ବର୍ଷର ଚାଷ ପରେ ଅନ୍ୟ ଅଞ୍ଚଳର ବିହନ ଆଣି ପ୍ରୟୋଗ କଲେ ଅଧିକ ସୁଫଳ ମିଳିପାରେ ।

ଅପର ପକ୍ଷରେ ପ୍ରାକୃତିକ କୀଟ ସଞ୍ଚରଣ ସହଜ ଓ ଶସ୍ତା । ଏ ପଦ୍ଧତିରେ ଗଛର ସମୁଦାୟ ଲାଖ ଅମଳ ନକରି ଗୋଟିଏ ଦୁଇଟି ଡାଳର ଲାଖ ଛାଡ଼ିଦିଆଯାଏ, ପରେ ସେଥିରୁ ଲାଖ ପୋକ ଗଛର ଅନ୍ୟତ୍ର ମାଡ଼ିଯାଆନ୍ତି । ଏ ପଦ୍ଧତିକୁ ସଫଳ କରିବାକୁ ହେଲେ ଭଲ ବିହନ ଥିବା ଡାଳକୁ ହିଁ ରଖାଯିବା ଦରକାର ଏବଂ ଏଇ ଡାଳଗୁଡ଼ିକ ଗଛର ଝଙ୍କାଳିଆ ଅଂଶର ମଝି କିମ୍ବା ତଳ ଭାଗରେ ରହିଲେ ଭଲ, ଅତି ଉପରେ

ନୁହେଁ । ତେବେ ଏ ପଦ୍ଧତିରେ ଅସୁବିଧା ହେଉଛି, ଗୋଟିଏ ଗଛରେ ହିଁ ବିଭିନ୍ନ ଡାଳରେ ଲାଖର ବିକାଶ ବିଭିନ୍ନ ସମୟରେ ହୁଏ, ତେଣୁ ଗୋଟିଏ ସମୟରେ ଗଛଟିକୁ ସଂପୂର୍ଣ୍ଣ ଅମଳ କରିବା କ୍ୱଚିତ ସମ୍ଭବ ହୁଏ ।

ବିହନ ଛଡ଼ାଯିବାର ପ୍ରାୟ ୫/୬ ମାସ ପରେ ଅମଳ ମିଳିଥାଏ । ଅନ୍ୟ ଗଛଗୁଡ଼ିକରୁ ବର୍ଷକୁ ୨ ଥର ଅମଳ ମିଳୁଥିବା ବେଳେ ଖଇର ଗଛରୁ ସାଧାରଣତଃ ଥରେ ହିଁ ମିଳିଥାଏ ।[୨୭] ଅମଳର ପରିମାଣ ବିହନ ପରିମାଣର ପ୍ରାୟ ୩ ଗୁଣ ଏବଂ ବେଳେ ବେଳେ ୫/୬ ଗୁଣ ପର୍ଯ୍ୟନ୍ତ ହୋଇଥାଏ ।

ବିହନ ପାଇଁ ଯାହା ଦରକାର, ସେତିକି ନେଇଯିବା ପରେ ଯେଉଁ ଲାଖ-କାଠିମାନ ରହିଯାଏ, ସେଥିରୁ ହାତରେ ବା ଛୁରୀ ସାହାଯ୍ୟରେ ଲାଖ ଛଡ଼ାଇ ଦିଆଯାଏ । ଏ ପ୍ରକାର ଲାଖକୁ କଞ୍ଚା ଲାଖ ବା ସବୁଜ ଲାଖ (stick-or green lac) ବୋଲି କୁହାଯାଏ କାରଣ ତାହା ଭଲ ଭାବେ ଶୁଖି ନଥାଏ ଏବଂ ଶକ୍ତ ହୋଇନଥାଏ । ଯେଉଁ ବିହନ-କାଠିମାନ ଗଛରେ ବନ୍ଧାଯାଇଥାଏ, ଲାଖ ପୋକ ବାହାରିଯିବା ପରେ ସେଗୁଡ଼ିକ ମଧ ଲୋକେ ନେଇ ଆସନ୍ତି[୨୮] ଏବଂ କଞ୍ଚା ଲାଖ ଛଡ଼ାଇ ଦିଅନ୍ତି । ତା' ପରେ ତାକୁ ପରିଷ୍କାର କରି ଶୁଖାଇ ଦିଆଯାଏ । ଏଇ ଶୁଖାଇବା କାମଟି ଉଚିତ ପଦ୍ଧତିରେ କରିବାକୁ ହୁଏ, ଯଥା :

ଯେଉଁ ଘରେ ପବନ ଓ ଆଲୋକର ଚଳାଚଳ ଯଥେଷ୍ଟ ଥିବ[୨୯], ସେଭଳି ଏକ ଗୋଦାମରେ ପରିଷ୍କାର ସିମେଣ୍ଟ ଚଟାଣରେ କଞ୍ଚା ଲାଖକୁ ପ୍ରାୟ ୩ ଇଞ୍ଚ ବହଳରେ ବିଛାଇ ଦେବାକୁ ହୁଏ । ଦିନକୁ ଦୁଇ ଥର ତାକୁ ଓଲଟାଇ ସମାନ କରିବାକୁ ହୁଏ, ତା'ନହେଲେ ସେଗୁଡ଼ିକ ବିଣ୍ଡା ଧରିଯିବାର ଆଶଙ୍କା ଥାଏ । ୧୫ ଦିନ ଏପରି କରିବା ପରେ ସପ୍ତାହକୁ ଦୁଇ ଥର ଓଲଟାଇ ସମାନ କଲେ ବି ଚଳିବ । ଏ ସମୟରେ (ଅର୍ଥାତ ପ୍ରଥମ ୧୫ ଦିନ ପରେ) ସେଇ ଲାଖକୁ ୬ ଇଞ୍ଚ ବହଳର ବି କରାଯାଇପାରେ (ଯଦି ଦରକାର ପଡ଼େ) । ତିନିମାସ ପରେ ଏ ଲାଖ ଭଲ ଭାବରେ ଶୁଖିଯାଏ ଏବଂ ବସ୍ତାରେ ବନ୍ଧାଯାଇ ପଠାଯିବା ପାଇଁ ଯୋଗ୍ୟ ହୁଏ । ଖରାରେ ଲାଖକୁ ଶୁଖାଇବା ଅନୁଚିତ । ଭଲ ଭାବେ ଶୁଖିଥିବା ଲାଖ ଅନ୍ୟ ଅସୁବିଧା ନଥିଲେ ଏକ ବର୍ଷରୁ ଦେଢ଼ ବର୍ଷ ପର୍ଯ୍ୟନ୍ତ ନଷ୍ଟ ନହୋଇ ସଂରକ୍ଷିତ ରହିପାରେ ।

ବିହନ-କାଠି ବି ଯଦି ତୁରନ୍ତ ଆବଶ୍ୟକ ନହୁଏ, ତା'ହେଲେ ଯତ୍ନ ସହକାରେ ରଖିବାକୁ ପଡ଼େ । ଯେଉଁଠି ସୂର୍ଯ୍ୟ କିରଣ ପଡୁନଥିବ, ପବନର ଚଳାଚଳ ଥିବ ଏବଂ ଗରମ ହେଉନଥିବ, ସେଭଳି ଜାଗାରେ ବାଉଁଶର ଥାକମାନଙ୍କରେ ଏଇ କାଠିଗୁଡ଼ିକୁ ସଜାଇ ରଖାଯାଏ ଏବଂ ଦରକାର ସମୟରେ ନେଇ ଗଛରେ ବନ୍ଧାଯାଏ ।

---

୨୭. ଖଇର ଗଛର କେତେକ ସମସ୍ୟା ରହିଛି । ଜାନୁଆରୀରୁ ଏପ୍ରିଲ ଏହାର ବିଶ୍ରାମକାଳ, ତେଣୁ ଏ ସମୟରେ ଡାଳଗୁଡ଼ିକୁ ରସ ପହଞ୍ଚୁବା କମ୍ ହୋଇଯାଏ । ଗ୍ରୀଷ୍ମଋତୁରେ ଏହାର ପତ୍ରଗୁଡ଼ିକ ଲାଖ ଫସଲକୁ ପ୍ରଚଣ୍ଡ ଖରାରୁ ସୁରକ୍ଷା ଦେଇପାରିବା ଅବସ୍ଥାରେ ନଥା'ନ୍ତି । ତେଣୁ ବର୍ଷାଋତୁ (ଜୁଲାଇ)ରେ କୀଟ ସଞ୍ଚରଣ କରାଇ ଶୀତଋତୁରେ ଅମଳ କରିବା ହିଁ ଏ ଗଛ ପାଇଁ ଏକମାତ୍ର ଉପାୟ ।

୨୮. ଲାଖ ପୋକ ବାହାରିଯିବାର ୩ ସପ୍ତାହ ମଧରେ ଏଗୁଡ଼ିକୁ ସଂଗ୍ରହ କରିଆଣିବା ଉଚିତ । ଗଛରେ ଖୁବ୍ ଅଧିକ ଲାଖପୋକ ଥିଲେ ଅଧିକ ଶୀଘ୍ର କାଢ଼ିଆଣିବା ଭଲ ।

୨୯. କବାଟ ଝରକାର ପର୍ଯ୍ୟାପ୍ତ ବ୍ୟବସ୍ଥା ଥିବ ।



କୁସୁମ ଡାଳରେ ଲାଖ ପୋକମାନେ ନୂଆକରି ବାନ୍ଧିଥିବା ବସା (ଧଳା ଦେଖାଯାଉଥିବା ଅଂଶ)। ହାତ ମୁଠାର ଉପରକୁ ପୁରୁଣା ଲାଖର ଆସ୍ତରଣ ରହିଛି ଯାହା ଡାଳର ପ୍ରକୃତ ରଙ୍ଗ ସହିତ ମିଶିଯାଇଥିବାରୁ ସ୍ପଷ୍ଟ ଦେଖାଯାଉନାହିଁ। (ବୁଢ଼ାଭୂୟାଁ, ସୁନ୍ଦରଗଡ଼)



ହଳଦିଆ ରଙ୍ଗର ଲାଖ ମୁଣ୍ଡାକୁ ପିଟାଯାଉଛି (ଢିଓନାଳି, ଅନୁଗୋଳ)



ଲାଖର ସୂତା ବାହାର କରାଯାଉଛି



ଅଭିଜ୍ଞ କାରିଗରଙ୍କ ହାତରେ ଲାଖ ସୂତା



ବାଡ଼ିରେ ଲାଖ ସୂତା ଚଢ଼ାଯାଉଛି ।



ଜଣେ ମହିଳା କଷ୍ଟାରଙ୍ଗ ଦିଆଯାଇଥିବା ବାଡ଼ି
ଉପରେ ଲାଖ ମୁଣ୍ଡା ଘଷୁଛନ୍ତି (ଦିଓନାଳି) ।
ଉହ୍ଲେଇ ଉପରେ ରହିଛି ବିକ୍ରି ପାଇଁ ପ୍ରସ୍ତୁତ
ଏକ ରଙ୍ଗରଙ୍ଗିଆ ବାଡ଼ି ।



ଶ୍ରୀ ଗୋରାଚାନ୍ଦ ମହାତୋ
ଦା'-ଆଙ୍କୁଡ଼ି ଦେଖାଉଛନ୍ତି ।

କେତେକ ଚାଷୀ ଲାଖକୁ କାଠିରୁ ଛଡ଼ା ନହୋଇଥିବା ଅବସ୍ଥାରେ ବିକ୍ରି କରିଥା'ନ୍ତି ଏବଂ ଏଥିପାଇଁ କେଜି ପ୍ରତି ୪୦ ରୁ ୫୦ ଟଙ୍କା (କେବେ କେବେ ୮୦ରୁ ୯୦ ଟଙ୍କା) ପର୍ଯ୍ୟନ୍ତ ପାଇଥା'ନ୍ତି (କୁସୁମୀ ଲାଖ ପାଇଁ)[୨୯(କ)]। କାଠିରୁ ଛଡ଼ାଇ ବିକ୍ରି କଲେ କେଜି ପ୍ରତି ଅଧିକ ୫/୧୦ ଟଙ୍କା ମିଳିଥାଏ ।

ଅନ୍ୟ କେତେକ ଅଞ୍ଚଳରେ ଲାଖରା ବା ଶଙ୍ଖାରୀ ଜାତିର କାରିଗରମାନେ ଲାଖକୁ ବିଭିନ୍ନ ଜିନିଷ ତିଆରି କରିବା ପାଇଁ ବ୍ୟବହାର କରିଥା'ନ୍ତି । ଏଥିପାଇଁ ସର୍ବପ୍ରଥମେ ସେମାନେ ଲାଖକୁ 'ଶୁଦ୍ଧ' ଅବସ୍ଥାକୁ ଆଣନ୍ତି ।

ଭଲ ଭାବେ ଶୁଖିଥିଲେ ବି କାଠିରୁ ଛଡ଼ା ଯାଇଥିବା ଲାଖରେ ବିଭିନ୍ନ ଅଶୁଦ୍ଧି ରହିଥାଏ (ଯଥା : ଧୂଳି) । ତେଣୁ ତାକୁ ପ୍ରଥମେ ପାଣି ଦେଇ ଶିଳରେ ବାଟି ଧୋଇ ତଥା ଛାଣି ନେବାକୁ ହୁଏ । ପ୍ରାୟ ୧୦/୧୨ ଥର ଏପରି କରିବା ପରେ ପରିଷ୍କାର ଲାଖର ଦାନାମାନ (ବାଲି ଭଳି) ସଂଗୃହୀତ ହୁଏ । ଏକ କେଜି ଅଶୁଦ୍ଧ ଲାଖରୁ ପ୍ରାୟ ୩୫୦ ବା ୪୦୦ ଗ୍ରାମ 'ଶୁଦ୍ଧ' ଲାଖ ମିଳେ । ଏଇ ଦାନାଗୁଡ଼ିକୁ ଛାଇରେ ବିଛାଇ ଦେଲେ ଶୁଖିଯାଏ ।

ଗୋଟିଏ କାଠବାଡ଼ିକୁ ଉହ୍ନେଇରେ ଗରମ କରି ଦାନାଗୁଡ଼ିକ ଉପରେ ଲଗାଇଲେ ସେଗୁଡ଼ିକ ତରଳି ବାଡ଼ି ଅଗରେ ଲାଖିଯା'ନ୍ତି । ସମସ୍ତ ଲାଖଦାନା ଏଇଭଳି ଭାବରେ ବାଡ଼ିରେ ଲାଖିଯାଇ ଗୋଟିଏ ମୁଣ୍ଡାର ଆକାର ହୋଇଯା'ନ୍ତି । ସେଇ ମୁଣ୍ଡାକୁ ବାରମ୍ବାର ଉହ୍ନେଇ[୩୦] ଉପରେ ଦେଖାଇ ହାତୁଡ଼ିରେ ପିଟାଯାଏ ଯେପରି ତାହା ସଂପୂର୍ଣ୍ଣ ନିଦା ହୋଇଯିବ । ମୁଣ୍ଡାଟି ବାଡ଼ି ଅଗରେ ଓହଳିବା ପରି ରହିଥିବାରୁ ପିଟିବା ବେଳେ ବାଡ଼ି ଛେଚି ହେବାର ଆଶଙ୍କା କମିଯାଇଥାଏ ।

ଏଇ ଲାଖ ମୁଣ୍ଡାକୁ ରଙ୍ଗୀନ ବି କରାଯାଇପାରେ । ରଙ୍ଗ ଘୋଳ ଥିବା ଥାଳିରେ ନରମ ଲାଖ ମୁଣ୍ଡାକୁ ବାରମ୍ବାର ବୁଡ଼ାଇଲେ ତାହା ରଙ୍ଗୀନ ହୋଇଯାଏ । ହାତୁଡ଼ିରେ ପିଟି ପିଟି ମୁଣ୍ଡାର ରଙ୍ଗକୁ ସବୁଦିଗରେ ସମାନ ରଖାଯାଏ ।

ଶଙ୍ଖା ତିଆରି କରିବା ପାଇଁ ଏକ ପ୍ରକାର ସଫା/ଧଳା ମାଟିକୁ ପ୍ରଥମେ ଶିଳରେ ଶୁଖିଲା ବାଟି ଗୁଣ୍ଡ କରାଯାଏ ଓ କନାରେ ଛାଣି ଫଗୁ ପରି ସୂକ୍ଷ୍ମ କରାଯାଏ । ତା'ପରେ ବାଡ଼ି ଅଗରେ ଲାଗିଥିବା ଲାଖମୁଣ୍ଡାକୁ ଉହ୍ନେଇରେ ଗରମ କରି ସେଥିରେ 'ବୁଡ଼ାଇଲେ' ଲାଖ ସହିତ ମାଟି ମିଶିବାକୁ ଲାଗେ । ହାତୁଡ଼ିରେ ପିଟି

---

୨୯(କ). ଭାରତୀୟ ଲାଖ ଗବେଷଣା ପ୍ରତିଷ୍ଠାନ ସହିତ ଯୋଗାଯୋଗ କରି ଜଣାପଡ଼ିଥିଲା ଯେ ଓଡ଼ିଶାର ଚାଷୀମାନେ କୁସୁମୀ ଲାଖ ପାଇଁ ଅନ୍ତତଃ ୫୦/୬୦ ଟଙ୍କା ତଥା ରଙ୍ଗିଣୀ ଲାଖ ପାଇଁ ଅନ୍ତତଃ ୩୦ ଟଙ୍କା (କେଜି ପ୍ରତି) ପାଇବା ଉଚିତ ।

୩୦. ଲାଖ କାରିଗରଙ୍କ ପାଇଁ ଉହ୍ନେଇ ବଡ଼ ଦରକାରୀ କାରଣ ଏଥିରେ ଅଙ୍ଗାର ପକାଇ ଯେଉଁ ନିଆଁ ଜଳାଯାଏ, ତା'ର ଉତ୍ତାପକୁ ନିୟନ୍ତ୍ରଣ କରିବା ସହଜ ହୁଏ । ଅଙ୍ଗାର ହଟାଇ ଦେଲେ ନିଆଁର ଧାସ ଅଧିକ ହୁଏ, ଅଙ୍ଗାର ଘୋଡ଼ାଇ ଦେଲେ କମିଯାଏ । ଏଭଳି ନିୟନ୍ତ୍ରିତ ତାପମାତ୍ରାରେ ହିଁ ଲାଖର ଅର୍ଦ୍ଧ-ତରଳ ବା ନରମ ଅବସ୍ଥା ସମ୍ଭବ ହୁଏ ଏବଂ ତାକୁ ବିଭିନ୍ନ କାମରେ ଲଗାଇ ହୁଏ ।

ପିଟି ଏଇ ମିଶ୍ରଣକୁ 'ପାଗ କରାଯାଉଥାଏ । ତା'ପରେ 'ପାଗ' ହୋଇଥିବା ମାଟିମିଶା ଲାଖକୁ ଉହ୍ନେଇ ଉପରେ ଦେଖାଇ ଛାଞ୍ଚ ସାହାଯ୍ୟରେ ଶଙ୍ଖା ତିଆରି କରାଯାଏ । ଶଙ୍ଖା ତିଆରି ପାଇଁ ଅତି ଶୁଦ୍ଧ ଲାଖ ଦରକାର ହୁଏ ନାହିଁ, ତେଣୁ ଏଭଳି ଲାଖ ପାଇଁ ଅଶୁଦ୍ଧ ଲାଖକୁ ୫/୬ ଥର ବାଟି ଛାଣିଲେ ବି ହୁଏ ।[୩୧] ଅନୁପାତ : ଲାଖ ତିନିଭାଗ, ମାଟି ଏକ/ଦୁଇ ଭାଗ । ଅଭିଜ୍ଞ କାରିଗର ପ୍ରାୟ ୧୦୦ ଗ୍ରାମ ଅଶୁଦ୍ଧ ଲାଖ ନେଇ ୧୦ ପଟ ଶଙ୍ଖା ଗଢ଼ିପାରନ୍ତି ଯାହାର ଦାମ ପ୍ରାୟ ୫୦ ଟଙ୍କା ଏବଂ ପରିଶ୍ରମ ତଥା ଅନ୍ୟାନ୍ୟ ଖର୍ଚ୍ଚ ପ୍ରାୟ ୩୦/୩୫ ଟଙ୍କା ଲାଗିଥାଏ । ତିନି ଘଣ୍ଟାରେ ଦଶ ପଟ ଶଙ୍ଖା ଗଢ଼ାଯାଇପାରେ ।

ରଙ୍ଗରଙ୍ଗିଆ ଲାଖ ବାଡ଼ି ତିଆରି ପାଇଁ କେତେକ ନିର୍ଦ୍ଦିଷ୍ଟ ଜାତିର ବାଡ଼ି (ଯଥା : କୁରେଇ ବା କୋରୁଆ)କୁ ଚାଞ୍ଛି ମସୃଣ କରି ଦେବା ପରେ ତା'କୁ ଶୁଖାଇ ରଙ୍ଗ କରିଦିଆଯାଏ । ଏ ରଙ୍ଗ ଯେପରି ପାଣି ପଡ଼ିଲେ ଧୋଇ ନଯିବ, ସେଥିପାଇଁ ଉହ୍ନେଇ ଉପରେ ଗରମ ହେଉଥିବା ଲାଖ ମୁଣ୍ଡା (ଅତି ଶୁଦ୍ଧ ହେବା ଦରକାର ନାହିଁ) କୁ ସେଥିରେ ଘଷି ଦିଆଯାଏ ଯାହା ଫଳରେ ବାଡ଼ିଟି ଉପରେ ପ୍ଲାଷ୍ଟିକ୍ ଜରି ଭଳି ଅତି ପତଳା ଆସ୍ତରଣଟିଏ ଜମିଯାଏ ଏବଂ ବାଡ଼ିର ଚମକ୍ ବଢ଼ିଯାଏ ।[୩୨] ତା'ପରେ ରଙ୍ଗ କରାଯାଇଥିବା ଶୁଦ୍ଧ ଲାଖମୁଣ୍ଡାରୁ ସୂତାମାନ କାଢ଼ି ବାଡ଼ିରେ ଗୁଡ଼ାଇ ଦିଆଯାଏ । ଏଇ ସୂତାକୁ ଛୁରୀରେ ଘଷିଲେ ଚିତ୍ର ଭଳି ହୋଇଯାଏ । ପ୍ରାୟ ୫୦ଟି ବାଡ଼ି (ପ୍ରାୟ ଦେଢ଼ ଫୁଟ ଲମ୍ବ) ପାଇଁ ୫୦୦ ଗ୍ରାମ ଅଶୁଦ୍ଧ ଲାଖ, ୨୫ ଟଙ୍କାର ରଙ୍ଗ ଏବଂ ତିନି ଦିନର ପରିଶ୍ରମ ଦରକାର ହୋଇଥିବା ବେଳେ ପ୍ରତିଟି ବାଡ଼ି ପ୍ରାୟ ୧ ଟଙ୍କା ବା ୨ ଟଙ୍କାରେ ମେଳା ବା ହାଟ ବଜାରରେ ବିକ୍ରି ହୋଇଥାଏ ।[୩୨(କ)]

ଶୁଦ୍ଧ ଲାଖର ମୁଣ୍ଡାକୁ ଉହ୍ନେଇ ଉପରେ ଟାଣିଲେ ଲାଖ ସୂତା ବାହାରିଥାଏ । ଉତ୍କୃଷ୍ଟ ଓ ପରିଷ୍କାର ଲାଖ ନ ହେଲେ ସୂତା ଠିକ୍ ବାହାରେ ନାହିଁ ଏବଂ ବିଭିନ୍ନ କଳାତ୍ମକ କାମ କରିବା ସମ୍ଭବ ହୁଏ ନାହିଁ ।

ପ୍ରକ୍ରିୟାକରଣ ସମୟରେ (ଯଥା : ବାଟିବା) ପାଣି ସଂସ୍ପର୍ଶରେ ଆସିଲେ ଲାଖ ସେ ପାଣିକୁ ଲାଲରଙ୍ଗର କରିଦେଇଥାଏ। ଏଇ ରଙ୍ଗ-ପାଣି (ଅତି ଗାଢ଼ କିମ୍ବା ଅତି ପତଳା ନହେଲେ ଭଲ)କୁ ଛାଣି ସେଥିରେ ତୁଳାକୁ ବୁଡ଼ାଇ ଦିଆଗଲେ ସେ ତୁଳା ଶୁଖିବା ପରେ ଅଳତା କରିବା ପାଇଁ କାମ ଦେଇଥାଏ କାରଣ ଏହାକୁ ପାଣିରେ ବୁଡ଼ାଇ ପାଦରେ ଲଗାଇଲେ ତୁଳାରେ ଥିବା ରଙ୍ଗ ପାଦରେ ଲାଗିଯାଏ। ଏ ପଦ୍ଧତି ନାନା ଦୃଷ୍ଟିରୁ ସୁବିଧାଜନକ କାରଣ ଏଥିରେ ଅଳତାକୁ ସହଜରେ ବହୁଦିନ ସାଇତି ରଖିହେବ (ଲାଖ-ରଙ୍ଗଭିଜା ଶୁଖିଲା

---

୩୧. ଦାନାଗୁଡ଼ିକ ଗୋଲମରିଚର ୪ ଭାଗରୁ ଏକ ଭାଗ ଆକାର ବିଶିଷ୍ଟ।

୩୨. ଚମକ ଆଣିବା ତଥା କାଠକୁ ସୁରକ୍ଷିତ ରଖିବାରେ ସାହାଯ୍ୟ କରୁଥିବାରୁ ଲାଖକୁ ପଲିସ୍ କରିବା ପାଇଁ ବ୍ୟବହାର କରାଯାଏ। ବଜାରରେ ଏଥିପାଇଁ ଲାଖର ଯେଉଁ ପ୍ରକ୍ରିୟାକୃତ ରୂପ ବିକ୍ରି ହୁଏ, ତାକୁ 'ଚୋପଡ଼ା' କୁହନ୍ତି। ଚୋପଡ଼ା ଯେତେ ଉତ୍କୃଷ୍ଟ ହେବ, ପଲିସ୍ ସେତେ ଭଲ ହୁଏ।

୩୨(କ). ଅନ୍ୟ ସମୟରେ ଫିମ୍ପି ମାରିଯିବାର ଆଶଙ୍କା ଥିବାରୁ ସାଧାରଣତଃ କାର୍ତ୍ତିକରୁ ଜ୍ୟେଷ୍ଠ ମାସ ଭିତରେ ଏ ପ୍ରକାର ବାଡ଼ି ତିଆରି କରାଯାଇଥାଏ।

ତୁଳା) ଏବଂ ବ୍ୟବହାର କରିବା ମଧ ସହଜ । ଅନ୍ୟପ୍ରକାରେ, ଅର୍ଥାତ କୃତ୍ରିମ ରଙ୍ଗରୁ ତିଆରି କରାଯାଇଥିବା ଲାଲ ରଙ୍ଗର ଦ୍ରବଣକୁ 'ଅଳତା' ବୋଲି ବିକ୍ରି କରାଗଲେ ମଧ ଲାଖ ଅଳତାର ଗୁଣ ସେଥିରେ ମିଳିବ ନାହିଁ ।

କୁସୁମୀ ଲାଖ ସର୍ବୋତ୍କୃଷ୍ଟ, ତେଣୁ କାରିଗରମାନେ ଏଇ ଲାଖ ଆବଶ୍ୟକ କରିଥା'ନ୍ତି । ରଙ୍ଗିଣୀ ଲାଖ ତୁଳନାରେ ଏହା ସଫା ଦେଖାଯାଏ (ରଙ୍ଗିଣୀ ଲାଖ ଅଧିକ ଲାଲ ଦେଖାଯାଏ) ଏବଂ ଅଧିକ ଓଜନର ମଧ ହୋଇଥାଏ ।

ବହୁ କାରଣରୁ ଗଛରେ ଥିବା ଲାଖ ନଷ୍ଟ ହୋଇଥାଏ, ଯଥା :

- ପ୍ରବଳ କୁହୁଡ଼ି
- ଭୀଷଣ ଓ କ୍ରମାଗତ ବର୍ଷା
- କୁଆପଥର
- ପ୍ରବଳ ଗରମ ବା ଥଣ୍ଡା
- ଶତ୍ରୁକୀଟ[୩୩]
- ବାଦୁଡ଼ି (ଇତ୍ୟାଦି) ।

ଏସବୁ କାରଣ କେତେକ କ୍ଷେତ୍ରରେ କେବଳ ଲାଖ ବା ତା'ର ପୋକକୁ ଏବଂ କେବେ କେବେ ଉଭୟକୁ ନଷ୍ଟ କରିଥାଏ । ବିଶେଷତଃ ଶତ୍ରୁକୀଟ ଯୋଗୁଁ ସର୍ବାଧିକ କ୍ଷତି ଘଟିଥାଏ । ଏହାର ନିରାକରଣ ପାଇଁ ନିମ୍ନ ଉପାୟମାନ କରାଯିବା ଉଚିତ, ଯଥା :

- ଉଚିତ ସମୟର ଏକ ସପ୍ତାହରୁ ଅଧିକ ପୂର୍ବରୁ ଲାଖ ସଂଗ୍ରହ କରିବା ଅନୁଚିତ ।
- ପ୍ରତି ଅଞ୍ଚଳରେ ନିର୍ଦ୍ଦିଷ୍ଟ ଜାତିର ଗଛ (କୁସୁମ, ପଳାଶ ଇତ୍ୟାଦି)ରେ ବସାବାନ୍ଧିଥିବା ଲାଖ ପୋକ କେବେ ବାହାରି ଆସିବେ, ତା'ର ଏକ ନିର୍ଦ୍ଦିଷ୍ଟ ସମୟ ଥାଏ ଏବଂ ପ୍ରତି ବର୍ଷ ଲକ୍ଷ୍ୟ ରଖିଲେ ଜଣାପଡ଼େ । ଅର୍ଥାତ୍, ଏ ବର୍ଷ ଯେଉଁ ସମୟରେ ବାହାରି ଆସିବେ, ପରବର୍ଷ ମଧ ଠିକ୍ ସେଇ ସମୟରେ ବାହାରି ଆସିବା(ଲାଖ ଭିତରୁ ବାହାରି ଗଛରେ ଚାଲିବା)ର ଯଥେଷ୍ଟ ସମ୍ଭାବନା ଥାଏ । ଏଇ ସମୟର ଠିକ୍ ପୂର୍ବରୁ (ଏକ ସପ୍ତାହ ଭିତରେ) ବିହନ-ଯୋଗ୍ୟ ଲାଖ ସଂଗ୍ରହ କଲେ ଭଲ, କିନ୍ତୁ ୨/୩ ସପ୍ତାହ ବା ଏକମାସ ପୂର୍ବରୁ ସଂଗ୍ରହ କଲେ ସ୍ତ୍ରୀ-କୀଟମାନଙ୍କର ଖାଦ୍ୟାଭାବ ଘଟେ ଯାହା ଫଳରେ ବିହନ ମଧ ଉଚିତ ମାନର ହୋଇପାରେ ନାହିଁ ।

---

୩୩. ଦୁଇ ପ୍ରକାର ଶତ୍ରୁକୀଟ ଥା'ନ୍ତି, ସେମାନଙ୍କ ଭିତରୁ କେତେକ କେବଳ ଲାଖ ପୋକ ଖାଉଥିବା ବେଳେ ଅନ୍ୟଗୁଡ଼ିକ ଲାଖ ପୋକ ସହିତ ଲାଖ ବି ଖାଇଯା'ନ୍ତି ।

- ଶତ୍ରୁକୀଟ ଲାଗିଥିବା ବିହନ ବ୍ୟବହାର କରିବା ଅନୁଚିତ ।
- ପ୍ରାକୃତିକ କୀଟ ସଞ୍ଚରଣ ପରିବର୍ତ୍ତେ କୃତ୍ରିମ ସଞ୍ଚରଣ ଅଧିକ ନିରାପଦ[୩୪] କାରଣ ଏଥିରେ ବିହନକୁ ଭଲ ରୂପେ ବାଛି ଗଛରେ ବନ୍ଧାଯାଏ ।
- କଞ୍ଚାଲାଖକୁ ରୋଗାକ୍ରାନ୍ତ ଗଛ ତଳେ ଜମା ନକରି ଦୂରକୁ ନେଇଯିବା ଭଲ ।
- ଲାଖକୁ ତୁରନ୍ତ କାଠିରୁ ଛଡ଼ାଇ ଦେବା ଉଚିତ (ଯଦି ଗଛରେ ବାନ୍ଧିବାର ଆବଶ୍ୟକତା ନଥାଏ) ।
- ଜମା ହୋଇଥିବା ଲାଖର ଗୁଣ ତଥା ପରିମାଣ କ୍ରମେ ହ୍ରାସ ପାଇଥାଏ, ତେଣୁ କାଟିବା ପରେ ଯଥାଶୀଘ୍ର ବିକ୍ରି କରିଦେବା ଭଲ (ଯଦି ଉଚିତ ସଂରକ୍ଷଣର ବ୍ୟବସ୍ଥା ନଥାଏ) ।
- ଯେଉଁଠି ମୁଖ୍ୟତଃ ରଙ୍ଗିଣୀ ଲାଖର ଚାଷ ହୁଏ, ସେଠାରେ କୁସୁମୀ ଲାଖର ଚାଷ ଆରମ୍ଭ କରିବା କିମ୍ବା କୁସୁମୀ ଲାଖର ଅଞ୍ଚଳରେ ରଙ୍ଗିଣୀର ଚାଷ ଆରମ୍ଭ କରିବା ଠିକ୍ ନୁହେଁ ।

ବିହନ-କାଠିର ବିଡ଼ାକୁ ୬୦ ମେଶ୍ (mesh, ଯାହା ଜାଲିରେ ଥିବା ଛିଦ୍ରର ଆକାର ବା ମାପ ଦର୍ଶାଇଥାଏ)ର ଜାଲିରେ ଗୁଡ଼ାଇ ଗଛରେ ବାନ୍ଧିଲେ କେତେକ ପତଙ୍ଗ ତଥା ବାଦୁଡ଼ି ଇତ୍ୟାଦିଙ୍କ ପାଇଁ ଆଉ ଲାଖ ପୋକ ଖାଇବାର ସୁଯୋଗ ମିଳେ ନାହିଁ । ପ୍ରୟୋଜନ ସ୍ଥଳେ ରୋଗଗ୍ରସ୍ତ ବିହନକୁ କେତେକ କୀଟନାଶକରେ ବୁଡ଼ାଇ ବିଶୋଧିତ କରିବାକୁ ହୁଏ । ସାଧାରଣତଃ ବର୍ଷା କାଳରେ ଫିମ୍ପି ଲାଗି ଲାଖକୁ ନଷ୍ଟ କରିଦେଇଥା'ନ୍ତି[୩୫], ସେଥିପାଇଁ ପୂର୍ବରୁ ସତର୍କ ରହି ନିର୍ଦ୍ଦିଷ୍ଟ ଫିମ୍ପିରୋଧକ ରସାୟନ ଛିଞ୍ଚିବାକୁ ହୁଏ ।

ଜମିରେ ଖତ ସାର ନଦେଇ ପ୍ରତି ବର୍ଷ ଚାଷ କଲେ ତା'ର ଉତ୍ପାଦିକା ଶକ୍ତି କମିଯାଏ ଏବଂ ଫସଲ ଭଲ ହୁଏ ନାହିଁ । ଲାଖ ଚାଷ କ୍ଷେତ୍ରରେ ବି ଏକଥା ପ୍ରଯୁଜ୍ୟ ଯଦିଓ ଅନେକ ଚାଷୀ ସେକଥା ବୁଝନ୍ତି ନାହିଁ । ଗଛ ଯେତେ ପ୍ରାଣବନ୍ତ ଓ ରସାଳ ହେବ, ଲାଖ ପୋକକୁ ସେତିକି ଭଲ ଖାଇବାକୁ ମିଳିବ ଏବଂ ତା' ଫଳରେ ଲାଖ ବି ଭଲ ହେବ । ଏ ବିଷୟ ଦୃଷ୍ଟିରେ ରଖି ନିମ୍ନ ବ୍ୟବସ୍ଥା ଦୁଇଟି କରିବା ଉଚିତ :

- ଦେଢ଼ ବର୍ଷ ଧରି ଗଛରେ ଚାଷ କରିବା ପରେ ପରବର୍ତ୍ତୀ ଦେଢ଼ ବର୍ଷ ତାକୁ ବିଶ୍ରାମ ଦେବା ଉଚିତ (ଅର୍ଥାତ ସେଥିରେ ଚାଷ ବନ୍ଦ ରଖାଯିବ) ।
- ଗଛ ମୂଳରେ ଥିବା ମାଟିକୁ ଖତ ସାର ଦେଇ ଉର୍ବର ରଖିବା ଭଲ ।

---

୩୪. ଅନ୍ତତଃ ଅକ୍ଟୋବର-ନଭେମ୍ବରରେ କୃତ୍ରିମ କୀଟ ସଞ୍ଚରଣ କରାଯିବା ଉଚିତ ।

୩୫. ଫିମ୍ପି ଲାଗିଲେ ଧଳା ଲୋମ ପରି ବାହାରିଥିବା ଅଂଶମାନ କ୍ରମେ ବାଦାମୀ/କଳା ପଡ଼ିଯାଏ ଓ ନଷ୍ଟ ହୋଇଯାଏ । ଯଦିଓ ଏଇ ଲୋମ ପରି ଅଂଶମାନ ଲାଖ ପୋକର ସୁସ୍ଥତା ତଥା ଜୀବନ୍ତତାର ଲକ୍ଷଣ, ତଥାପି କେବେ କେବେ ଏଗୁଡ଼ିକ ନଷ୍ଟ ହୋଇଯାଇଥିବା ସତ୍ତ୍ୱେ ବି ଲାଖ ପୋକ ବେଶ୍ ସୁସ୍ଥ ରହିଥାଏ ।

ସବୁ ଅଞ୍ଚଳ ଲାଖ ଚାଷ ପାଇଁ ଉପଯୁକ୍ତ ନୁହେଁ । ଉପଯୁକ୍ତ ଅଞ୍ଚଳର ଲକ୍ଷଣଗୁଡ଼ିକ ଏଠାରେ ଦିଆଗଲା :

- ବର୍ଷା ଠିକ୍ ପରିମାଣରେ ହେଉଥିବ ।
- ସୂର୍ଯ୍ୟକିରଣ ଓ ପବନ ଯଥେଷ୍ଟ ମିଳୁଥିବ ।
- ମାଟିରେ ପାଣି ଅଧିକ ସମୟ ଜମି ରହୁନଥିବ ।
- ଭୂତଳ ଜଳର ସ୍ତର ମାଟିର ଅତି ନିକଟରେ କିମ୍ବା ଅତି ଗଭୀରରେ ନଥିବ ।
- ମଣିଷର କୌଣସି ଗତିବିଧି ମାଟିର ପ୍ରାକୃତିକ ଗୁଣକୁ ନଷ୍ଟ କରିନଥିବ ।

ପ୍ଲାଷ୍ଟିକ ଭଳି କେତେକ ଶସ୍ତା ଓ ବହୁ-ଉପଯୋଗୀ ବିକଳ୍ପ ବାହାରିବା ଫଳରେ ଲାଖର ଚାହିଦା ବିଶ୍ୱବଜାରରେ ଗତ ୭୦/୮୦ ବର୍ଷ ମଧ୍ୟରେ ଯଥେଷ୍ଟ ହ୍ରାସ ପାଇଛି । କିନ୍ତୁ ବର୍ତ୍ତମାନ ମଧ୍ୟ ଏହା ଅନେକ କାମରେ ଲାଗୁଛି (ଯଥା : ଜଉମୁଦ) ଏବଂ ଭାରତୀୟ ଲାଖ ଗବେଷଣା ପ୍ରତିଷ୍ଠାନର ବୈଜ୍ଞାନିକମାନେ କୁହନ୍ତି ଯେ ଲାଖ ଚାଷୀ ଯେତେ ପରିମାଣରେ ଲାଖ ଉତ୍ପାଦନ କଲେ ମଧ୍ୟ ତାହା ବିକ୍ରି ହୋଇଯିବ କାରଣ ଲାଖର ବଜାର ପରିସ୍ଥିତି ଆଦୌ ନିରାଶାଜନକ ନୁହେଁ, ବରଂ ବେଶ୍ ଉତ୍ସାହଜନକ । କଞ୍ଚା ଲାଖ ଏବଂ ଶୁଦ୍ଧ ଲାଖ ବୋଲି ଆମେ ଯାହାକୁ ସୂଚାଉଛୁ, ଲାଖ କାରଖାନାଗୁଡ଼ିକରେ ଜଟିଳ ପ୍ରକ୍ରିୟାକରଣ ଦ୍ୱାରା ତା' ଅପେକ୍ଷା ଅଧିକ ଉପଯୋଗୀ କିମ୍ବା ସ୍ୱତନ୍ତ୍ର ଧରଣର ରୂପ ଦେଇ ଲାଖରୁ ଅନେକ ପ୍ରକାର ଜିନିଷ ତିଆରି କରାଯାଇଥାଏ । ଦିନେ ଗ୍ରାମୋଫୋନ ରେକର୍ଡ଼ ଏଥିରେ ହିଁ ତିଆରି ହେଉଥିଲା ।

ଆୟୁର୍ବେଦ ମତରେ ଲାଖ କଫ ଓ ପିତ୍ତର ଶାମକ (ପ୍ରକୋପ ଶାନ୍ତ କରାଏ) ଏବଂ ଜ୍ୱର-, ଜୀବାଣୁ- ତଥା ଚର୍ମରୋଗ ନାଶକ ।[୩୫(କ)] ଲାକ୍ଷାଦି ତୈଳ ଏବଂ ଲାକ୍ଷାଦି ବଟୀ ଭଳି କେତେକ ଔଷଧରେ ଏହାର ବ୍ୟବହୃତ ହୋଇଥାଏ । (ମିଶ୍ର : ୧୯୯୧)

ଏକଦା ଓଡ଼ିଶାର ଗଡ଼ଜାତମାନଙ୍କରେ ପ୍ରଚୁର ଲାଖ ଉତ୍ପାଦିତ ହେଉଥିଲା । ଆଜି କିନ୍ତୁ ପରିସ୍ଥିତି ବଦଳିଯାଇଛି । ଜଙ୍ଗଲ ଏବଂ ଗଛ କାଟିନିଆଯିବା ଫଳରେ କୁସୁମ ଭଳି ଗଛର ସଂଖ୍ୟା ଅନେକ କମିଯାଇଛି । ଆଠମଲ୍ଲିକ ଅଞ୍ଚଳର ବଇଣ୍ଡା ନିକଟରେ ଏ ଘଟଣାର ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

ଏଭଳି ପରିସ୍ଥିତିର ପ୍ରତିକାର କରିବାକୁ ହେଲେ ଜଙ୍ଗଲ ସୁରକ୍ଷା ସହିତ କୁସୁମ ଗଛର ବଂଶବିସ୍ତାର ପାଇଁ ମଧ୍ୟ ଚେଷ୍ଟା କରିବାକୁ ପଡ଼ିବ ।

କୁସୁମ ଗଛ (Schleichera oleosa) ପ୍ରାୟ ୩୨ ମିଟର ପର୍ଯ୍ୟନ୍ତ ଉଚ୍ଚ ହୋଇପାରେ ଏବଂ

---

୩୫(କ). ଲାଖ ଗବେଷଣା ପ୍ରତିଷ୍ଠାନର କେତେକ ଅଧିକାରୀ କହିଥିଲେ ଯେ ଏଭଳି ସିଦ୍ଧାନ୍ତକୁ ସମର୍ଥନ ଅଥବା ବିରୋଧ କରିବା ଭଳି ତଥ୍ୟ/ପ୍ରମାଣ ସେମାନଙ୍କ ନିକଟରେ ନାହିଁ ।

ହାଲୁକା ତଥା ନିଗିଡ଼ା ମାଟିରେ ଭଲ ବଢ଼ିଥାଏ । ବାଲିଆ କିମ୍ବା ମୋରମ ମାଟିରେ ମଧ ଏ ଗଛ ଦେଖାଯାଏ, ତେବେ ଦୋରସା ମାଟିରେ ଅଧିକ ଭଲ ହୁଏ ।

ଜୁନ-ଜୁଲାଇ ମାସରେ କୁସୁମ ଫଳ ପାକଳ ହୋଇ ଶୀଘ୍ର ମାଟିରେ ଖସିପଡ଼େ । ସଦ୍ୟ ସଂଗୃହୀତ ମଞ୍ଜିକୁ ନେଇ ପୂର୍ବରୁ ଖତ ଆଦି ଦେଇ ପ୍ରସ୍ତୁତ କରାଯାଇଥିବା ମାଟିରେ ସିଧା ସଳଖ ପୋତି ମାଟି ଘୋଡ଼ାଇ ଦେବା ହିଁ ଏହାର ବଂଶବିସ୍ତାର ପାଇଁ ସହଜତମ ପଦ୍ଧତି । ଗଜା ବାହାରିବା ପାଇଁ ପ୍ରାୟ ୧୦ ଦିନ ଲାଗିଥାଏ, କିନ୍ତୁ ଛୋଟଗଛକୁ ଗାଈଗୋରୁ ଯେପରି ନ ଖାଆନ୍ତି, ସେଥିପାଇଁ ବ୍ୟବସ୍ଥା କରିବା ଦରକାର । ତା'ଛଡ଼ା, ପ୍ରଥମ କିଛି ବର୍ଷ ନିୟମିତ ଘାସ ବାଛିବା ବି ଆବଶ୍ୟକ ହୋଇଥାଏ ।

କୁସୁମ ଗଛ ମରୁଡ଼ି ଓ ତୁଷାରପାତ ସହିପାରେ ଏବଂ ଛାଇରେ ବି ବଢ଼ିପାରେ । ଗ୍ରୀଷ୍ମଋତୁ ପୂର୍ବରୁ ପତ୍ରଝଡ଼ା ଦେଇ ପ୍ରଚଣ୍ଡ ଖରା ସମୟରେ ନିଜ ଛାଇ ଦ୍ୱାରା ମାଟିକୁ ସୁରକ୍ଷା ଦେଉଥିବା ଯୋଗୁଁ ସାଗୁଆନ ଗଛ ସହିତ ମିଶାଇ ଲଗାଇବା ଭଳି ଉତ୍କୃଷ୍ଟ ଗଛଟିଏ ରୂପରେ ଏହାକୁ ଦେଖାଯାଇଥାଏ ।

ସବୁଠାରୁ ଉତ୍କୃଷ୍ଟ ଲାଖ ଏଇ ଗଛରୁ ହିଁ ମିଳିଥାଏ, ତେବେ ଲାଖ ଚାଷ ଦ୍ୱାରା କୁସୁମ ମଞ୍ଜିର ଉତ୍ପାଦନରେ ବାଧା ଆସେ । କୁସୁମ ମଞ୍ଜିର ତେଲ ଖାଦ୍ୟୋପଯୋଗୀ ହେବା ସହିତ ପୋଡ଼ା ଘା' ତଥା ବ୍ରଣ ଭଳି କେତେକ ସମସ୍ୟାରେ ଔଷଧ ଭଳି କାମ ଦେଇଥାଏ ଏବଂ କେଶ ବଢ଼ାଇବାରେ ମଧ ସାହାଯ୍ୟ କରେ । ତା'ଛଡ଼ା, କୁସୁମ କାଠ ଖୁବ୍ ଶକ୍ତ, ତେଣୁ ଶଗଡ଼, ଲଙ୍ଗଳ ଏବଂ ତେଲଘଣା ତିଆରିରେ ଏହାକୁ ବ୍ୟବହାର କରାଯାଇଥାଏ ।

ଦୀର୍ଘ ଦିନର ଅଭିଜ୍ଞତାରୁ ଲାଖଚାଷୀମାନେ ଜାଣିଥିଲେ ଯେ ଗୋଟିଏ ଅଞ୍ଚଳ ଲାଖ ଚାଷ ପାଇଁ ଉପଯୁକ୍ତ ହୋଇଥିଲେ ବି ସେଠିକାର ସବୁ କୁସୁମ ଗଛ ହୁଏତ ଏଥିପାଇଁ ଉପଯୁକ୍ତ ନହୋଇପାରେ । ଯେଉଁ ଗଛ (କୁସୁମ)ରେ ଲାଖ ଭଲ ହେବ, ତାକୁ ସେମାନେ 'ମିଠା କୁସୁମ' ବୋଲି କହୁଥିବା ବେଳେ ଅଯୋଗ୍ୟ ଗଛଟିକୁ 'ପିତା କୁସୁମ' ବୋଲି କହୁଥିଲେ ଏବଂ ନିମ୍ନ ଲକ୍ଷଣମାନଙ୍କ ଦ୍ୱାରା ଏ ଦୁଇପ୍ରକାର ଗଛ ଚିହ୍ନୁଥିଲେ :

| | ମିଠା | ପିତା |
|---|---|---|
| ଛାଲି | ମୋଟା | ପତଳା |
| ଛାଲିରେ କଟାଯାଇଥିବା ଅଂଶ : | ଲାଲ ରଙ୍ଗର | ଧଳା ରଙ୍ଗର |
| ପତ୍ର | ଅପେକ୍ଷାକୃତ ବଡ଼ | ଅପେକ୍ଷାକୃତ ଛୋଟ |
| କାଠ | ନରମ | ଶକ୍ତ |

ଗୋଟିଏ ପ୍ରଶ୍ନ ଉଠିପାରେ ଯେ ଅଳ୍ପ ବୟସର ଗଛଟିଏ, ଯାହାର କାଣ୍ଡ ତଥା ଡାଳ ଇତ୍ୟାଦି ସବୁଜ ଓ ରସାଳ ହୋଇ ରହିଛି, ସେଥିରେ ଲାଖ ଚାଷ କଲେ କ୍ଷତି କ'ଣ ? ତା'ର ଉତ୍ତର ହେଉଛି : ଥରେ ଚାଷ କରିବା ପରେ ଯେତେବେଳେ ଶାଖା ସଂସ୍କାର କରାଯିବ, ସେତେବେଳେ ଛୋଟ ଗଛଟି ପାଇଁ ତା'ର ଚାପ ସମ୍ଭାଳିବା

କଷ୍ଟକର ହୋଇପଡ଼ିବ ଏବଂ ଗଛଟି ବଡ଼ ହୋଇପାରିବାର ସମ୍ଭାବନା କ୍ଷୀଣ ହୋଇଯିବ । ତେଣୁ ଏ ପ୍ରକାର ଗଛରେ ଅଧିକ କାଳ ଚାଷ କରାଯାଇପାରିବ ନାହିଁ । ପୂର୍ଣ୍ଣ ବିକଶିତ ଗଛ ହିଁ ଲାଖ ଚାଷ ପାଇଁ ଉପଯୋଗୀ ।

ଲାଖ ଚାଷ କଲେ ଗଛରେ ଫୁଲ ଫଳ ହେବାର ସମ୍ଭାବନା ବି ପ୍ରାୟ ନଷ୍ଟ ହୋଇଯାଏ କାରଣ ଲାଖ ପୋକମାନେ ଫୁଲକୁ ସଂପୂର୍ଣ୍ଣ ବିକଶିତ ହେବାକୁ ଦିଅନ୍ତି ନାହିଁ ।

ମୟୂରଭଞ୍ଜ ତଥା ଅନ୍ୟ କେତେକ ଅଞ୍ଚଳରେ କିଛି ଲୋକ ଚାଷ ନକରି କେବଳ ଜଙ୍ଗଲରୁ ଲାଖ ସଂଗ୍ରହ କରିଥା'ନ୍ତି । ଚାଷ-ଲାଖ ଓ ଜଙ୍ଗଲୀ-ଲାଖର ଗୁଣାତ୍ମକ ମାନରେ ଅନେକ ପ୍ରଭେଦ ରହିପାରେ କାରଣ ଚାଷୀ ନିଜର ପରିଶ୍ରମ ତଥା ସତର୍କ ଦୃଷ୍ଟି ଯୋଗୁଁ ଚାଷ-ଲାଖର ମାନ ତଥା ପରିମାଣକୁ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ରଖିଥାଏ ଯାହାକି ଜଙ୍ଗଲୀ-ଲାଖ କ୍ଷେତ୍ରରେ ପ୍ରାୟ ହୋଇନଥାଏ । ଜଙ୍ଗଲରେ କୌଣସି ଗଛର ଲାଖ ଅମଳଯୋଗ୍ୟ ହୋଇଯିବା ପରେ ମଧ ହୁଏତ ବହୁଦିନ ଧରି କାହା ଦୃଷ୍ଟିକୁ ଆସି ନ ଥାଏ ଏବଂ ପରେ କେହି ସଂଗ୍ରହକାରୀ ଯଦି ତା'କୁ ସଂଗ୍ରହ କରିଆଣେ, ତା'ହେଲେ ସେତେବେଳକୁ ସେଇ ଲାଖର ଗୁଣ ଅନେକ ପରିମାଣରେ ନଷ୍ଟ ହୋଇଯାଇଥିବାର ଆଶଙ୍କା ଥାଏ । ଉପକୂଳବର୍ତ୍ତୀ କେତେକ ଜଙ୍ଗଲରେ ଜଳବାୟୁ ପ୍ରଭାବରୁ ବର୍ଷକୁ ତିନି ଥର ଲାଖ ମିଳିଥାଏ, କିନ୍ତୁ ସେହି ଲାଖ କମ୍ ବହଳର ହୁଏ ।

***

# ବିଧିନିଷେଧଗୁଡ଼ିକୁ ଅବଜ୍ଞା କରାଯିବାର କାରଣ

ବନଜାତ ଦ୍ରବ୍ୟଗୁଡ଼ିକର ସଂଗ୍ରହ ଅଥବା ଉପଯୋଗ ସଂକ୍ରାନ୍ତରେ ଯେଉଁସବୁ ପରମ୍ପରାଗତ ତଥା ଆଧୁନିକ (ବୈଜ୍ଞାନିକ) ସୂତ୍ର (ବିଧିନିଷେଧ)ମାନ ରହିଛି, ସେଗୁଡ଼ିକୁ ସଂଗ୍ରହକାରୀ/ଉପଯୋଗକାରୀମାନେ ମାନୁ ନଥିବାର ଦୃଷ୍ଟାନ୍ତ ମଧ ଯଥେଷ୍ଟ ରହିଛି ଏବଂ ଏଇ ଅବଜ୍ଞାଭାବ ନିମ୍ନ କେତୋଟି କାରଣବଶତଃ ସୃଷ୍ଟି ହୋଇଛି ବୋଲି ଆମର ଅନୁଧାନରୁ ଜଣାପଡ଼ିଛି, ଯଥା :

- ପ୍ରାଚୀନ ମୂଲ୍ୟବୋଧ (Value System)ର ଅବକ୍ଷୟ : ପୁରୁଣା ପୀଢ଼ି (ପିଢ଼ି ବା generation)ର ଲୋକେ ଯାହାସବୁ ମାନୁଥିଲେ ବା ବିଶ୍ୱାସ କରୁଥିଲେ, ନୂଆ ପୀଢ଼ିର ବଂଶଧରମାନେ ସେଗୁଡ଼ିକ ମଧରୁ ଅନେକକୁ ସହଜରେ ଗ୍ରହଣ କରିପାରୁନାହାନ୍ତି । ସମୟକ୍ରମେ ପରିବେଶ ବଦଳିବା ତଥା ଆଧୁନିକ ଶିକ୍ଷା ଓ ସଭ୍ୟତାର ବିକାଶ/ପ୍ରସାର ଘଟିବା ଦ୍ୱାରା ନୂଆ ପିଢ଼ି ତଥା ପୁରୁଣା ପିଢ଼ି ମଧରେ ଏଇ ଦୂରତ୍ୱ ଦେଖାଦେଇଛି ।
- ବ୍ୟାବହାରିକ ସମସ୍ୟା : ପଥରରେ ଛାଲି ଛଡ଼ାଇବା ଅନେକଙ୍କ ପାଇଁ କଷ୍ଟକର ବ୍ୟାପାର; ତା'ଛଡ଼ା ବ୍ୟବସାୟ ଉଦ୍ଦେଶ୍ୟରେ ଅଧିକ ମାତ୍ରାରେ ଔଷଧୀୟ ଛାଲି କାଢ଼ିବା ଯେଉଁମାନଙ୍କ ଲକ୍ଷ୍ୟ, ସେମାନଙ୍କ ଦୃଷ୍ଟିରେ ଏ ପଦ୍ଧତିରେ ଅଯଥା ସମୟ ନଷ୍ଟ ହେବ । ଛାଲିର ଗୁଣରକ୍ଷା ଅପେକ୍ଷା ପରିମାଣ ଉପରେ ସେମାନେ ବେଶି ଗୁରୁତ୍ୱ ଦେଇଥା'ନ୍ତି, ତେଣୁ ତାଙ୍କ ପାଇଁ ଏଭଳି ପଦ୍ଧତି ବ୍ୟାବହାରିକ ଦୃଷ୍ଟିରୁ ଉପଯୋଗୀ ନୁହେଁ । ମୋଟ ଉପରେ କହିବାକୁ ଗଲେ ବ୍ୟାବସାୟିକ ଦୃଷ୍ଟକୋଣ ଯୋଗୁଁ ବ୍ୟାବହାରିକ ସମସ୍ୟା ଅଧିକ ଜଟିଳ ତଥା ପ୍ରଭାବକାରୀ ରୂପ ନେଇଥାଏ ।
- ଲାଭକ୍ଷତି ହିସାବ : ଦେଶୀ ମୁଥା (ଘାସ ଜାତୀୟ) ପାହାଡ଼ି ମୁଥା ତୁଳନାରେ ଛୋଟ ହେଲେ ବି ଅଧିକ ଉପଯୋଗୀ ବୋଲି ଜାଣିଥିଲେ ବି ବୈଦ୍ୟ ଯଦି ଦେଖନ୍ତି ଯେ ଏକ କେଜି ଦେଶୀ ମୁଥା ସଂଗ୍ରହ ପାଇଁ ତାଙ୍କୁ ହୁଏତ ୪୦ଟଙ୍କାର ମଜୁରି ଦେବାକୁ ପଡ଼ିବ (ସଂଗ୍ରହକାରୀକୁ), ଅଥଚ ଦୋକାନରେ ୨୦ ଟଙ୍କା ଦେଲେ ସେତିକି ପରିମାଣର ପାହାଡ଼ି ମୁଥା ସହଜରେ ମିଳିଯିବ; ତା'ହେଲେ ସେ ଦ୍ୱିତୀୟ ବ୍ୟବସ୍ଥାଟିକୁ ବାଛିନେବା ଆଦୌ ଆଶ୍ଚର୍ଯ୍ୟଜନକ ନୁହେଁ । ତେଣୁ ଲାଭକ୍ଷତିର ହିସାବ ବି ବିଧିନିଷେଧର ଅନୁସରଣକୁ ପ୍ରଭାବିତ କରିପାରେ ।
- ସଚେତନତାର ଅଭାବ : ଦେଖାଯାଇଛି ଗୋଟିଏ ଅଞ୍ଚଳର ଲୋକେ ଯେଉଁ ସୂତ୍ରଟିକୁ ଜାଣିଛନ୍ତି, ଅନ୍ୟ ଏକ ଅଞ୍ଚଳର ଲୋକେ ହୁଏତ ସେ ବିଷୟରେ କିଛି ଜାଣନ୍ତି ନାହିଁ । ତେଣୁ ଏ ଧରଣର ଅଜ୍ଞାନତା ବି ବିଧିନିଷେଧର କ୍ରିୟାନ୍ୱୟନ (implementation) କୁ ପ୍ରଭାବିତ କରିପାରେ ।

***

# ଗୋଷ୍ଠୀ ଜଙ୍ଗଲ ପରିଚାଳନାରେ ଅଣକାଷ୍ଠ ବନଜାତ ଦ୍ରବ୍ୟର ସ୍ଥାୟୀ ଉତ୍ପାଦନକ୍ଷମ ବିଧିନିଷେଧର ପ୍ରଚଳନ

ବସୁନ୍ଧରା ପକ୍ଷରୁ ବିଭିନ୍ନ ସମୟରେ କରାଯାଇଥିବା ଅନୁଧ୍ୟାନଗୁଡ଼ିକରୁ ଜଣାଯାଇଛି ଯେ ଯେହେତୁ କାଠର ଅଭାବ ହିଁ ଅଧିକାଂଶ ସ୍ଥାନରେ ଗୋଷ୍ଠୀ ଜଙ୍ଗଲ ସୁରକ୍ଷା ଲାଗି ପ୍ରେରଣା ଯୋଗାଇଥିଲା, ତେଣୁ ଏଭଳି ସ୍ଥାନଗୁଡ଼ିକରେ ଜଙ୍ଗଲ ସୁରକ୍ଷାର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ରହିଲା କାଠ-ଉପଯୋଗୀ ଗଛର ସଂରକ୍ଷଣ, ସୁରକ୍ଷା ତଥା ବିକାଶ ଏବଂ ତଦନୁଯାୟୀ ଯେଉଁସବୁ ନିୟମ ପ୍ରଣୟନ କରାଗଲା, ସେଥିରେ କାଠର ସଂଗ୍ରହ ହିଁ ଏକମାତ୍ର କିମ୍ବା କେନ୍ଦ୍ରୀୟ ବିଷୟ ହୋଇରହିଲା । ଅର୍ଥାତ, ଅଣକାଷ୍ଠ ବନଜାତ ଦ୍ରବ୍ୟର ସଂରକ୍ଷଣ ଅଥବା ସ୍ଥାୟୀ ଉତ୍ପାଦନକ୍ଷମ ବ୍ୟବସ୍ଥା ପ୍ରବର୍ତ୍ତନ ଲାଗି ଏଥିରେ କୌଣସି ଗୁରୁତ୍ୱ ଦିଆଯାଇ ନଥିଲା ।

ଫଳ, ମୂଳ, ଛାଲି ଆଦିର ସଂଗ୍ରହ ସଂକ୍ରାନ୍ତୀୟ କୌଣସି କଟକଣା ଅଥବା ବିଧିନିଷେଧର ପ୍ରଚଳନ କରାନଯିବା ପଛରେ ଅନ୍ୟ କେତେକ କାରଣ ମଧ୍ୟ ରହିଥିଲା, ଯଥା :

- ଗରିବ ସଂଗ୍ରହକାରୀଙ୍କର ଜୀବନ ଓ ଜୀବିକାର ସୁରକ୍ଷା : କଟକଣା ଜାରି କରାଗଲେ ଏଇ ଗରିବମାନେ ଅସୁବିଧାରେ ପଡ଼ିବେ ବୋଲି ଭାବି ଏଭଳି ପଦକ୍ଷେପ ନିଆଯାଇନଥିଲା ।

- କାଠ-ଉପଯୋଗୀ ଗଛର ସୁରକ୍ଷା : ଲଘୁ ବନଜାତ ଦ୍ରବ୍ୟର ସଂଗ୍ରହ ପାଇଁ କଟକଣା ରହିଲେ କ୍ଷୁଦ୍ର ସଂଗ୍ରହକାରୀମାନେ ହୁଏତ ଜୀବିକାର୍ଜନର ଅନ୍ୟ ସହଜ ଉପାୟ ନପାଇ ଗଛ କାଟି ନେଇ (କାଠ ଚୋରି) ପାରନ୍ତି ବୋଲି ଆଶଙ୍କା ଥିଲା ।

- ମାନବିକତାବୋଧ : ଚେରମୂଳଗୁଡ଼ିକର ସଂଗ୍ରହ ଉପରେ କଟକଣା ରଖାଗଲେ ରୋଗୀମାନେ କ୍ଷତିଗ୍ରସ୍ତ ହେବେ ଯାହାକି ଏକ ଅମାନବିକ ପଦକ୍ଷେପ ହେବ ବୋଲି ମଧ୍ୟ ଏକ ଭାବନା କେତେକ କ୍ଷେତ୍ରରେ ରହିଥିଲା ।

- ହେୟ ମନୋଭାବ : କାଠ ଗଛ ରୂପେ ଗଣା ନଯାଉଥିବା କେତେକ ଲତା ବା ଛୋଟ ଗଛର ଅସ୍ତିତ୍ୱକୁ ହୁଏତ ହେୟ ଜ୍ଞାନ କରାଯାଉଥିଲା କିମ୍ବା ସେଗୁଡ଼ିକର ଅସ୍ତିତ୍ୱ ଖୁବ୍ କମ୍ ପରିମାଣରେ ଥିବାରୁ ସେଗୁଡ଼ିକୁ ଗୁରୁତ୍ୱ ଦିଆଯାଉନଥିଲା ।

● ସଚେତନତାର ଅଭାବ : କେତେକ ଅଣକାଷ୍ଠ ବନଜାତ ଦ୍ରବ୍ୟର ଗୁରୁତ୍ୱ ତଥା ଜଙ୍ଗଲର ସ୍ୱାସ୍ଥ୍ୟ ଉପରେ ସେଗୁଡ଼ିକର ଯଥେଷ୍ଟ ସଂଗ୍ରହର କୁପ୍ରଭାବ ସଂପର୍କରେ ହୁଏତ ଅନେକ ସୁରକ୍ଷାକାରୀ ସଂଗଠନ କିଛି ଜାଣିନଥିଲେ ।

ଫଳ ସ୍ୱରୂପ, ନିକଟ ଅତୀତରେ ଧାନୀ-ପାଞ୍ଚମୌଜା ଅଞ୍ଚଳରେ ବାହାର ବ୍ୟବସାୟୀ ସ୍ଥାନୀୟ ଲୋକଙ୍କୁ ହାତକରି ଜୟସଣ୍ଢା ଛାଲିର ବୋରା ସଂଗ୍ରହରେ ସକ୍ଷମ ହୋଇଥିଲେ । ଅପର ପକ୍ଷରେ, ଲପଙ୍ଗା (ସମ୍ବଲପୁର ଜିଲ୍ଲା)ରେ ଯେହେତୁ ସ୍ଥାନୀୟ ଜଙ୍ଗଲରୁ ଚେରମୂଳ ସଂଗ୍ରହ କରିବା ସଂପର୍କରେ କୌଣସି ପ୍ରକାର କଟକଣା ସେଠିକାର ସୁରକ୍ଷା ସମିତି ରଖୁନାହିଁ, ବାହାର ବ୍ୟବସାୟୀମାନେ ତା'ର ଦୁରୂପଯୋଗ କରିବାର ସଂଭାବନା ଉନ୍ମୁକ୍ତ ହୋଇରହିଛି ଯାହା ଫଳରେ କି କେତେକ ବନୌଷଧି ମଧ ଲୋପ ପାଇଯିବାର ଆଶଙ୍କା ରହିଛି ।

ମୟୁରଭଞ୍ଜ ଜିଲ୍ଲାର ବୁଢ଼ୀଖମାରୀରେ କେତୋଟି ଭିନ୍ନ ଧରଣର ଘଟଣା ଦେଖିବାକୁ ମିଳିଥିଲା । ପ୍ରଥମତଃ, ସ୍ଥାନୀୟ ଜଙ୍ଗଲ (ଲୋକସଂରକ୍ଷିତ)ରୁ ଏକ ପ୍ରକାର ଲତାର ବ୍ୟାପକ ସଂଗ୍ରହ ଉପରେ ସେଠିକାର ସୁରକ୍ଷା ସମିତି କୌଣସି ପ୍ରକାର କଟକଣା ରଖି ନଥିଲା ଯେହେତୁ ବନ ବିଭାଗ ତରଫରୁ ଦିଆଯାଇଥିବା ପ୍ରଶିକ୍ଷଣରୁ ସେମାନଙ୍କର ଧାରଣା ହୋଇଥିଲା ଯେ ଏ ଧରଣର ଯାବତୀୟ ଲତା ଜଙ୍ଗଲର ସୁସ୍ଥ ବିକାଶ ଲାଗି ଅନ୍ତରାୟ ହୁଅନ୍ତି, ତେଣୁ ଏଗୁଡ଼ିକ ଯେତେ କଟିବ, ଜଙ୍ଗଲର (ବଡ଼ଗଛର) ସେତେ ମଙ୍ଗଳ ।[୩୬] ଏବଂ ଦ୍ୱିତୀୟତଃ, ବୁଢ଼ୀଖମାରୀ ଜଙ୍ଗଲରୁ ପଳଛାଲିର ସଂଗ୍ରହ ଅବ୍ୟାହତ ଥିବା ସତ୍ତ୍ୱେ ତା'ପ୍ରତି କର୍ମକର୍ତ୍ତା (ସୁରକ୍ଷା ସମିତି) ବିଶେଷ କୌଣସି ଗୁରୁତ୍ୱ ଦେଇନଥିଲେ କାରଣ ତାଙ୍କର ଧାରଣା ଥିଲା ଯେ ଛାଲି ପୁରା କାଢ଼ି ନିଆଗଲେ ବି ବଞ୍ଚିରହିବାର କ୍ଷମତା ପଳ ଗଛର ରହିଛି ।[୩୭]

ଏସବୁ ସତ୍ତ୍ୱେ ବି କେଉଁଠି କେଉଁଠି ସାମାନ୍ୟ କେତେକ କଟକଣା ରଖାଯାଇଥିବା ବିଷୟ ଜଣାପଡ଼ିଛି, ଯଥା :

● ବରହମ (ଆଠମଲ୍ଲିକ) : କେହି ଜଙ୍ଗଲରୁ ବାଉଁଶ କରଡ଼ି ଆଣିପାରିବେ ନାହିଁ ।

● ଝାରଗାଁ (ଝାରସୁଗୁଡ଼ା) : ନିର୍ଦ୍ଧାରିତ ଦୁଇଦିନ ମଧରେ ହିଁ ଚାରଫଳ ସଂଗ୍ରହ କରିବାକୁ ହେବ, ତା'ପରେ ନୁହେଁ ।

● ଲପଙ୍ଗା (ସମ୍ବଲପୁର) : ଚାର ଫଳ ପାଚିଲେ ଗାଁ'ରେ ଜଣାଇ ଦିଆଯିବ ଏବଂ ନିର୍ଦ୍ଧାରିତ ସମୟରେ ହିଁ ଏହାକୁ ସଂଗ୍ରହ କରିବାକୁ ହେବ ।

---

୩୬. ଏଇ ଧାରଣା ନେଇ ପିପ୍ପଳୀ ତଥା ଅନନ୍ତମୂଳ ଭଳି ଉପଯୋଗୀ ଔଷଧିଲତାଗୁଡ଼ିକୁ ଯଦି ସଫା କରିଦିଆଯାଏ, ତା'ହେଲେ ମଙ୍ଗଳ ହେବ ନା ଅମଙ୍ଗଳ, ସେକଥା ବିଚାରଣୀୟ ।

୩୭. ଏଭଳି ଗଛଟିଏ ଲେଖକଙ୍କୁ ଦେଖାଇ ଦେବାକୁ ଯାଇ କର୍ମକର୍ତ୍ତା ନିଜର ଏଇ ଭୁଲ ସଂପର୍କରେ ସଚେତନ ହୋଇଥିଲେ ।

ଏହାଛଡ଼ା, କେତେକ ପରୋକ୍ଷ କଟକଣା ମଧ କେତେକ ସ୍ଥାନରେ ରହିଛି । ଉଦାହରଣ ସ୍ୱରୂପ, ଲପଙ୍ଗାରେ ମହୁଲ ସଂଗ୍ରହ ପାଇଁ ଓ ବାଘମୁଣ୍ଡା (ଦେବଗଡ଼)ରେ କେନ୍ଦୁପତ୍ର ସଂଗ୍ରହ ପାଇଁ ଜଙ୍ଗଲରେ ନିଆଁ ଲଗାଇବାର ପାରମ୍ପରିକ ଅଭ୍ୟାସଟିକୁ ନିଷେଧ କରାଯାଇଛି ।

ଏଇସବୁ ବିଧିନିଷେଧର ପ୍ରଚଳନ କେବେ କେବେ ଅସ୍ଥାୟୀ ଅଥବା ପରିବର୍ତ୍ତନଶୀଳ ମଧ ହୋଇଥିବାର ଦେଖାଯାଇଛି । ଯଥା : ବାଲେଶ୍ୱର ଜିଲ୍ଲାର ଅଁ'ଳାପାଳଠାରେ ଯେତେବେଳେ ଜଙ୍ଗଲ ସୁରକ୍ଷା ଆରମ୍ଭ ହେଲା, ସେତେବେଳେ ଜଙ୍ଗଲର ଶୋଚନୀୟ ଅବସ୍ଥାକୁ ଦୃଷ୍ଟିରେ ରଖି ଦାନ୍ତକାଠିର ସଂଗ୍ରହକୁ ମଧ ନିଷେଧ କରିଦିଆଗଲା । କିଛି ବର୍ଷ ପରେ ଖଲି ତିଆରି ପାଇଁ ଶାଳ ପତ୍ର ସଂଗ୍ରହର ଅନୁମତି ମିଳିଲା, ତେବେ ବାହାର ଲୋକଙ୍କୁ ନୁହେଁ । ପରେ ବାହାର ଲୋକଙ୍କୁ ମଧ ଏ ଅନୁମତି ଦିଆଗଲା ।

ଅନ୍ୟ ପ୍ରକାର ଦୃଷ୍ଟାନ୍ତ ମଧ ରହିଛି ଯେଉଁଥିରେ କଟକଣା ରହିଥିଲେ ମଧ ତାକୁ ପାଳନ କରାଯାଉନାହିଁ । ବୁଢ଼ୀଖମାରୀରେ ପ୍ରାଥମିକ ସଂଗ୍ରହକାରୀଙ୍କୁ କୁହାଯାଇଥିଲା ଯେ ସେମାନେ ଗଛର ଫଳ/ମଞ୍ଜି ସଂଗ୍ରହ କରିବା ପାଇଁ ଦା' ଲଗାଯାଇଥିବା ଆଙ୍କୁଡ଼ି ବ୍ୟବହାର କରି ପେନ୍ଥାଟିକୁ କାଟିଦେବେ ଯାହା ଫଳରେ କି ଡାଳ ଭାଙ୍ଗିବା ଦରକାର ପଡ଼ିବ ନାହିଁ । କିନ୍ତୁ ସ୍ଥାନୀୟ କେତେକ ପ୍ରାଥମିକ ସଂଗ୍ରହକାରୀ ଆଦୌ ଏହାକୁ ମାନୁନାହାନ୍ତି ବୋଲି ଜଣାପଡ଼ିଲା ।

ଲପଙ୍ଗାରେ ଜଙ୍ଗଲରୁ ମହୁଲ ସଂଗ୍ରହ ଗ୍ରାମବାସୀଙ୍କ ପାଇଁ ନିଷିଦ୍ଧ ହୋଇଛି କାରଣ ସେଥିପାଇଁ ବ୍ୟାବସାୟିକ ପଟ୍ଟା ଦିଆଯାଇଛି । ଅର୍ଥାତ୍, ନିଷେଧାଦେଶର କାରଣ କେବଳ ଅର୍ଥ ସଂଗ୍ରହ; ସ୍ଥାୟୀ ଉତ୍ପାଦନକ୍ଷମ ବ୍ୟବସ୍ଥା ନୁହେଁ । ଗ୍ରାମବାସୀଙ୍କର ନିୟମିତ ଚାନ୍ଦା ପରିବର୍ତ୍ତେ ଅନ୍ୟ ସୂତ୍ରରୁ ଆୟର ଉପାୟ କରିବା ଲାଗି ହିଁ ଲପଙ୍ଗାର ଜଙ୍ଗଲ ସୁରକ୍ଷା ସମିତି ଏଭଳି ନିଷ୍ପତ୍ତି ନେଇଛି । ଅପର ପକ୍ଷରେ, ଗଡ଼ବାଣିକିଲୋ ଜଙ୍ଗଲରେ ମହୁଲ ସଂଗ୍ରହ ପାଇଁ କଟକଣା ନାହିଁ; ବାହାର ଲୋକ ବି ମହୁଲ ନେଇପାରିବେ; କିନ୍ତୁ ଟୋଲ କେବଳ ସୁରକ୍ଷାକାରୀ ଗ୍ରାମବାସୀ ହିଁ ନେଇପାରିବେ ବୋଲି ବ୍ୟବସ୍ଥା ରହିଛି । କହିବା ବାହୁଲ୍ୟ ଯେ ଏ କ୍ଷେତ୍ରରେ ମଧ ସ୍ଥାୟୀ ଉତ୍ପାଦନକ୍ଷମ ବ୍ୟବସ୍ଥା କଟକଣାର ଆଧାର ନୁହେଁ, ବରଂ ମହୁଲ ସେମାନଙ୍କ ପାଇଁ ବେଶି ଅର୍ଥ ରଖେ ନାହିଁ (କିନ୍ତୁ ଟୋଲକୁ ନେଇ ତେଲ କରାଯାଏ) ବୋଲି ବାହାର ଲୋକେ ମହୁଲ ନେଇଗଲେ ବି ଗଡ଼ବାଣିକିଲୋବାସୀଙ୍କର ଆପତ୍ତି ନାହିଁ ।

***

# ମହିଳାମାନଙ୍କର ଭୂମିକା

ଲଘୁ ବନଜାତ ଦ୍ରବ୍ୟଗୁଡ଼ିକର ସଂଗ୍ରହ/ଉତ୍ପାଦନ ତଥା ଉପଯୋଗ କ୍ଷେତ୍ରରେ ମହିଳାମାନଙ୍କ ଭୂମିକା ଉଭୟ ଦ୍ରବ୍ୟ ତଥା ସ୍ଥାନ ଅନୁଯାୟୀ ଭିନ୍ନ ଭିନ୍ନ ହୋଇଥାଏ ।

ଉଦାହରଣ ସ୍ୱରୂପ, ଗଛର ଛାଲି ମୁଖ୍ୟତଃ ପୁରୁଷମାନେ ସଂଗ୍ରହ କରୁଥିବା ବେଳେ ସାନପଥୁରିଆ ଗାଁ (ନୟାଗଡ଼ ଜିଲ୍ଲା)ର ଆଦିବାସୀ ମହିଳାମାନେ ହିଁ ଚାର ଫଳ ସଂଗ୍ରହ କରିଥା'ନ୍ତି ଏବଂ ସେମାନଙ୍କର ପୁରୁଷ ସଂପର୍କୀୟ ଏଭଳି କାମ (ଚାର ସଂଗ୍ରହ) କରିବାକୁ ଯା'ନ୍ତି ନାହିଁ ବୋଲି ଏକ ପ୍ରକାର ଆତ୍ମସନ୍ତୋଷର ସହିତ କୁହନ୍ତି ।

କାଳିଆପୋଷି (ସୁନ୍ଦରଗଡ଼) ଗାଁରେ ଉଭୟ ପୁରୁଷ ତଥା ମହିଳା ଜଙ୍ଗଲକୁ ସବାଇ ଘାସ ସଂଗ୍ରହ ପାଇଁ ଯାଇଥା'ନ୍ତି । କିନ୍ତୁ ଦଉଡ଼ିକୁ ପାଗ କରିବା କାମ ମୁଖ୍ୟତଃ ପୁରୁଷମାନେ ହିଁ କରିଥା'ନ୍ତି ।

ବିରହର ବା ମାଙ୍କଡ଼ିଆ ଜାତିରେ ଶିଆଳି ଦଉଡ଼ି ତିଆରି କରିବାରେ ଉଭୟ ପୁରୁଷ ତଥା ମହିଳା ଭାଗ ନେଉଥିବା ବେଳେ ଲଇରୁ ଛାଲି କାଢ଼ିବା କାମଟି ସାଧାରଣତଃ ପୁରୁଷମାନେ ହିଁ କରିଥା'ନ୍ତି । ଲହୁଣିପଡ଼ା (ସୁନ୍ଦରଗଡ଼) ଅଞ୍ଚଳରେ ହେଉଥିବା ଲାଖ ଚାଷରେ ମଧ ପୁରୁଷମାନଙ୍କ ଭୂମିକା ମୁଖ୍ୟ ହୋଇରହିଥାଏ । ଏସବୁ ଭୂମିକାଗତ ତାରତମ୍ୟ ପଛରେ ଏକ ବା ଏକାଧିକ କାରଣ ରହିଥାଏ, ଯଥା :

- **ଶାରୀରିକ ସାମର୍ଥ୍ୟର ଆବଶ୍ୟକତା :**

ଲହୁଣୀପଡ଼ାର ଲାଖ ଚାଷୀମାନେ କୁହନ୍ତି ଯେ ମହିଳାମାନେ ଗଛରେ ଚଢ଼ି ଆବଶ୍ୟକ ବ୍ୟବସ୍ଥାମାନ କରବା ସହଜ ନୁହେଁ । ମାଙ୍କଡ଼ିଆମାନେ ବି କହିଥା'ନ୍ତି ଯେ ଶିଆଳି ଲତାର ଛେଲି ଛଡ଼ାଇବା ଅପେକ୍ଷାକୃତ କଷ୍ଟକର, ତେଣୁ ମହିଳାମାନଙ୍କ ପାଇଁ ଏ କାମ ଯୋଗ୍ୟ ନୁହେଁ ।

- **ପୁରୁଷର ପାରମ୍ପରିକ ମହତ୍ତ୍ୱ :**

କେତେକ କାମକୁ ଅପେକ୍ଷାକୃତ ଗୌଣ ଜୀବିକା ହିସାବରେ ଦେଖାଯାଇଥାଏ ଏବଂ ଏଗୁଡ଼ିକ ସମର୍ଥ ପୁରୁଷମାନଙ୍କ ପାଇଁ ଗୌରବଜନକ ନୁହେଁ ବୋଲି ଧାରଣା ରହିଥାଏ । ତେଣୁ ସାଧାରଣତଃ ମହିଳାମାନଙ୍କ ପାଇଁ ଏଗୁଡ଼ିକ ଛାଡ଼ିଦିଆଯାଏ ଏବଂ ଅପେକ୍ଷାକୃତ ଅସମର୍ଥ (ବିକଳାଙ୍ଗ ଅଥବା ବୃଦ୍ଧ, ଇତ୍ୟାଦି) ପୁରୁଷମାନେ ମଧ ଏଥିରେ ଅଂଶଗ୍ରହଣ କରିଥିବା ଘଟଣା ସ୍ଥଳବିଶେଷରେ ଦେଖାଯାଇଥାଏ । ସାନପଥୁରିଆ ଗାଁର ମହିଳାମାନେ ଯେତେବେଳେ କହିଲେ ଯେ ଚାର କୋଳି ସଂଗ୍ରହ ପାଇଁ ତା'ଙ୍କ ଗାଁର ପୁରୁଷମାନେ ଯା'ନ୍ତି ନାହିଁ, ସେତେବେଳେ ଜଣାଯାଉଥିଲା ଯେପରିକି ପୁରୁଷମାନେ ଅନ୍ୟ ଗୁରୁତ୍ୱପୂର୍ଣ୍ଣ କାମ ଲାଗି ରହିଛନ୍ତି ବୋଲି ସେମାନେ କହିବାକୁ ଚାହୁଁଥିଲେ ଏବଂ ନିଜ କାମଟିକୁ ତା' ତୁଳନାରେ ଗୌଣ କରି ଦେଖୁଥିଲେ ।

● ମାନବ ସମ୍ବଳର ଅଭାବ :

କେତେକ କ୍ଷେତ୍ରରେ ପରିବାରର ସଦସ୍ୟମାନେ ବିଭିନ୍ନ କାମ କରିବା ଲାଗି ନିଜକୁ ବାଣ୍ଟି ଦେଇଥା'ନ୍ତି କାରଣ ସମସ୍ତଙ୍କ ପାଖରେ ସବୁକାମ କରିବା ଭଳି ସୁବିଧା ବା ସମୟ ନଥାଏ । ଏଭଳି କ୍ଷେତ୍ରରେ ଛୋଟ ପିଲାମାନେ ମଧ ସାହାଯ୍ୟ କରିଥା'ନ୍ତି ବା କେତେକ ଦାୟିତ୍ୱ ନେଇଥା'ନ୍ତି ।

● ଧୈର୍ଯ୍ୟର ଅଭାବ :

କେତେକ କାମରେ ଶାରୀରିକ ପରିଶ୍ରମ ଅପେକ୍ଷା ଧୈର୍ଯ୍ୟ ଓ ଯତ୍ନର ଆବଶ୍ୟକତା ଅଧିକ ରହିଥାଏ ଏବଂ ପୁରୁଷମାନେ କ୍ୱଚିତ ଏଭଳି କାମକୁ ପସନ୍ଦ କରିଥା'ନ୍ତି ।

ବିଧିନିଷେଧଗୁଡ଼ିକ ମାନି ଚଳିବା ଭଳି ଧୈର୍ଯ୍ୟ ଅନେକ କ୍ଷେତ୍ରରେ ପୁରୁଷମାନେ ଦେଖାଇନଥା'ନ୍ତି, ଅଥଚ ମହିଳାମାନେ ନିଜର ସହଜାତ ସ୍ୱଭାବ ବଶତଃ ସେଗୁଡ଼ିକୁ ଅପେକ୍ଷାକୃତ ସହଜରେ ପାଳନ କରିଥା'ନ୍ତି । ବରପାଲି ଗାଁ'ର ହରିଜନ ଶ୍ରେଣୀର ଲୋକେ ଶିଆଳି ପତ୍ର ସଂଗ୍ରହ ପାଇଁ ଜଙ୍ଗଲକୁ ଯାଇଥା'ନ୍ତି, କିନ୍ତୁ ଗାଁ'ର କେତେଜଣ ଯୁବକ ନିଜେ ସ୍ୱୀକାର କରିକହିଲେ ଯେ ମହିଳାମାନେ ଯେଉଁଭଳି ଯତ୍ନ ସହକାରେ ପତ୍ର ତୋଳନ୍ତି, ପୁରୁଷମାନେ କ୍ୱଚିତ ତା' କରିଥା'ନ୍ତି, ବରଂ ଶୀଘ୍ର ବହୁତ ପତ୍ର ପାଇବା ଆଶାରେ ପୁରୁଷମାନେ ଲଇଗୁଡ଼ିକ ହାଣି ଦେବାର ମଧ ଦେଖାଯାଏ । ତେବେ ମଜାର କଥା ହେଉଛି ଧୈର୍ଯ୍ୟ ସହକାରେ ପତ୍ର ତୋଳୁଥିବା ମହିଳାମାନେ ହିଁ ବରଂ ପୁରୁଷଙ୍କ ତୁଳନାରେ ଅଧିକ ଏବଂ ଭଲ ପତ୍ର ସଂଗ୍ରହ କରିଥିବାର ଦେଖାଯାଇଥାଏ, ଠିକ୍ ସେଇ ଠେକୁଆ-କଇଁଚ ଦୌଡ଼ର ପରିଣାମ ପରି ।

କିନ୍ତୁ ସବୁ କ୍ଷେତ୍ରରେ ବା ସବୁ ସମୟରେ ମହିଳାମାନଙ୍କର ଏତେଦୂର ଧୈର୍ଯ୍ୟ ଦେଖାଯାଏ ନାହିଁ । ସାନ ପଥୁରିଆର ଆଦିବାସୀ ମହିଳାମାନେ ନିଜେ ହିଁ କହିଲେ ଯେ ବଡ଼ କେନ୍ଦୁଗଛରେ ଭଲ କେନ୍ଦୁ ପତ୍ରର ସନ୍ଧାନରେ ସେମାନେ କେବେ କେବେ ଡାଳମାନ ଭାଙ୍ଗି ମଧ ଦେଇଥା'ନ୍ତି । ଆସ୍କାସ୍ଥିତ ବିଭିନ୍ନ ଆୟୁର୍ବେଦୀୟ ଔଷଧ ପ୍ରସ୍ତୁତକାରୀଙ୍କୁ ଚେରମୂଳ ଯୋଗାଉଥିବା ଗଣ୍ଡପାଲୀ ଗାଁ'ର ମହିଳାମାନେ ମଧ ସେଗୁଡ଼ିକ (ଚେରମୂଳ)ର ସଂଗ୍ରହ ସମୟରେ କୌଣସି ବିଧିନିଷେଧ ପାଳନ କରୁଥିବାର ସୂଚନା ମିଳିନାହିଁ । ଏପରିକି, ଯେଉଁସବୁ ପ୍ରାଥମିକ ପ୍ରକ୍ରିୟାକରଣ ସେମାନେ ଯୋଗାଉଥିବା କଞ୍ଚାମାଲର ମାନ- ତଥା ମୂଲ୍ୟ ବୃଦ୍ଧି କରିପାରିବ, ତା' ସଂପର୍କରେ ମଧ ସେମାନେ ହୁଏତ କିଛି ଜାଣନ୍ତି ନାହିଁ କିମ୍ବା ଜାଣିଲେ ବି ପାଳନ କରନ୍ତି ନାହିଁ । ସକାଳୁ ଚେରମୂଳ ସଂଗ୍ରହ ଉଦ୍ଦେଶ୍ୟରେ ବାହାରିଯାଇ ଯାହା ପାଇଥା'ନ୍ତି, ସେଗୁଡ଼ିକୁ ସେଇଭଳି ହିଁ (ଅର୍ଥାତ୍, କଞ୍ଚା) ସିଧାସଳଖ ବିକ୍ରି କରିଦେଇ ସେମାନେ ସଂଧାରେ ଘରକୁ ଫେରନ୍ତି ।

***

# କେତେକ ଉପଯୋଗୀ ବୃକ୍ଷଲତାର ବଂଶବିସ୍ତାର ପାଇଁ ଅନାଗ୍ରହର କାରଣ

ଯେଉଁ କେତୋଟି ଅଣକାଷ୍ଠ ବନଜାତ ଦ୍ରବ୍ୟର ଉପଯୋଗ ତଥା ସଂଗ୍ରହ ସୂତ୍ର ଏଥିରେ ଦିଆଯାଇଛି, ସେଗୁଡ଼ିକ ମଧ୍ୟରୁ କେତେକର ଚାଷ ଅଥବା ମନୁଷ୍ୟକୃତ ବଂଶବିସ୍ତାର ରାଜ୍ୟର ନିର୍ଦ୍ଦିଷ୍ଟ କେତେକ ଅଞ୍ଚଳରେ ସୀମିତ ରହିଥିଲା ବେଳେ ଅନ୍ୟ କେତୋଟି କ୍ଷେତ୍ରରେ ଲୋକେ ପ୍ରାୟତଃ ରାଜ୍ୟବ୍ୟାପୀ ଅନାଗ୍ରହ ପ୍ରଦର୍ଶନ କରିଥିବାର ଦେଖାଯାଏ । ଏତେ ଉପଯୋଗୀ ହେବା ସତ୍ତ୍ୱେ ବି ଏଇ ଦ୍ରବ୍ୟଗୁଡ଼ିକର ବ୍ୟାପକ ଉତ୍ପାଦନ କ୍ଷେତ୍ରରେ ଦେଖାଯାଉଥିବା ଉଦାସୀନତାର ଅନେକ କାରଣ ରହିଛି, ଯଥା :

- ମହୁଲ ଓ ଚାର ଗଛ ଅନେକ ସ୍ଥାନରେ ଯଥେଷ୍ଟ ପରିମାଣରେ ଜଙ୍ଗଲରେ ରହିଛି, ତେଣୁ ସେଗୁଡ଼ିକର କୃତ୍ରିମ ବଂଶବିସ୍ତାରର ବ୍ୟବସ୍ଥା ଅନାବଶ୍ୟକ ବୋଲି ଅନେକେ ଅନୁଭବ କରିଥାନ୍ତି ।[୩୮]
- କେତେକ ଗଛ କେବଳ ପ୍ରାକୃତିକ ଉପାୟରେ ହିଁ ଭଲ ବଢ଼ିଥାଏ, ମନୁଷ୍ୟକୃତ ଉପାୟରେ ନୁହେଁ ବୋଲି ଲୋକେ ଲକ୍ଷ୍ୟ/ଧାରଣା କରିଥା'ନ୍ତି । ଶାଳଗଛ ପରି ମହୁଲ କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ ବୋଲି ଶୁଣାଯାଏ ଏବଂ ଏଭଳି ଧାରଣାଗୁଡ଼ିକ ସବୁ କ୍ଷେତ୍ରରେ ଭିତ୍ତିହୀନ ବୋଲି କୁହାଯାଇପାରିବ ନାହିଁ, କାରଣ କୃତ୍ରିମ ବଂଶବିସ୍ତାର ବ୍ୟବସ୍ଥା ପ୍ରତି ସବୁ ଜାତି ଗଛର ପ୍ରତିକ୍ରିୟା ସମାନ ହୋଇନଥାଏ ।
- ପରମ୍ପରା ମଧ୍ୟ କେତେକ କ୍ଷେତ୍ରରେ ପ୍ରଭାବକାରୀ ହୋଇଥାଏ । ଲାଖ ଚାଷ କ୍ଷେତ୍ରରେ ଏହା ବିଶେଷ ଦେଖାଯାଏ ଏବଂ ଏଥିସହିତ ଜାତିଗତ ସମସ୍ୟା, ପେଶା(ଜୀବିକା)ଗତ ଅଭ୍ୟାସ ତଥା ଆତ୍ମ ବିଶ୍ୱାସ ଏବଂ ପାରିପାର୍ଶ୍ୱିକ ସୁବିଧା ସୁଯୋଗ ଭଳି ଅନେକ କାରଣ ଜଡ଼ିତ ଥାଏ ।
- ସ୍ଥାନାଭାବ ମଧ୍ୟ ଏକ ସମସ୍ୟା ତଥା କାରଣ ହୋଇ ଦେଖାଦେଇଥାଏ । ଚାନ୍ଦପୁର (ଖୋର୍ଦ୍ଧା) ନିକଟସ୍ଥ ବରପାଲି ଗାଁ'ର ହରିଜନ ମହିଳାମାନେ ଶିଆଳି ପତ୍ର ବିକ୍ରି କରି ଚଳିଥା'ନ୍ତି, କିନ୍ତୁ ଶିଆଳି ଲତା ଘରବାଡ଼ିରେ କାହିଁକି ଲଗାଉ ନାହାନ୍ତି ବୋଲି ପ୍ରଶ୍ନ ହେବାରୁ ସେମାନେ କହିଥିଲେ ଯେ ଏ ଲତା ବହୁ ଦୂର ମାଡ଼ିବ ଏବଂ ସେତେ ବଡ଼ ଜାଗା ସେମାନଙ୍କର ଘରବାଡ଼ିରେ ନାହିଁ ।

---

୩୮. ନୟାଗଡ଼ ଜିଲ୍ଲାର ରଣପୁର ନିକଟସ୍ଥ ବାଦଭୂଇଁ ଗାଁ'ର ଜଙ୍ଗଲ ହେଉଛି ମହୁଲ ପ୍ରଧାନ, ତେଣୁ ସେଠିକାର ଲୋକେ ମହୁଲ ଗଛ ଲଗାଇବା ଅଯଥା ବୋଲି ମନେକରିବା ସ୍ୱାଭାବିକ ।

- ମାନ୍ଦା ବଜାର ଅଥବା ବିକ୍ରି କରିବାର ସୁଯୋଗ ସୁବିଧାର ଅଭାବ ମଧ୍ୟ କେତେକ କ୍ଷେତ୍ରରେ ନିରୁତ୍ସାହର କାରଣ ହୋଇଥାଏ ।
- ସଚେତନତା ତଥା/ଅଥବା ସମୁଚିତ ଜ୍ଞାନ-କୌଶଳରେ ଅଭାବ ମଧ୍ୟ ଏକ ବଡ଼ କାରଣ ହୋଇ ଦେଖାଦେଇଥାଏ । ଉଦାହରଣ ସ୍ୱରୂପ, ଅଶ୍ୱଗନ୍ଧା ଯେ ପ୍ରାଥମିକତା ଭିତ୍ତିରେ ଚାଷ କରାଯିବା ଭଳି ଏକ ବନୌଷଧି, ସେ ବିଷୟରେ ଓଡ଼ିଶାର ଅନେକ ଅଞ୍ଚଳରେ ଲୋକେ ସଚେତନ ନୁହଁନ୍ତି ଏବଂ କେତେଜଣ ସଚେତନ ଥିଲେ ମଧ୍ୟ ଅଶ୍ୱଗନ୍ଧା ଚାଷର ପଦ୍ଧତି ଜାଣି ନାହାନ୍ତି ।
- ବିହନ ସଂଗ୍ରହରେ ଅସୁବିଧା ବି କେବେ କେବେ ଏକ ମୁଖ୍ୟ ପ୍ରତିବନ୍ଧକ ହୋଇ ଦେଖାଦେଇଥାଏ । ପୁଣି କେଉଁଠି ଅର୍ଥାଭାବ ବି ଗୁରୁତର ସମସ୍ୟା ସୃଷ୍ଟି କରିଥାଏ (ବ୍ୟାବସାୟିକ ଉତ୍ପାଦନ ଆରମ୍ଭ କରିବା ଲାଗି) ।

ଏସବୁ କାରଣ ବ୍ୟତୀତ ମାନବ ସମ୍ବଳର ଅଭାବ ତଥା ଆଳସ୍ୟ ଭଳି ଅନ୍ୟ କେତେକ କାରଣ ମଧ୍ୟ କେବେ କେବେ ବଡ଼ ପ୍ରତିବନ୍ଧକ ରୂପେ କାର୍ଯ୍ୟ କରିଥାଏ ।

ତଥାପି, ଆମେ ଆଶା କରିବୁ ଯେ ଏଇ ପ୍ରକାଶନଟି ବ୍ୟକ୍ତିବିଶେଷ ତଥା ଜଙ୍ଗଲ ସୁରକ୍ଷା ସମିତିମାନଙ୍କୁ ଔଷଧୀୟ ତଥା ଅନ୍ୟାନ୍ୟ ଉପଯୋଗୀ ବୃକ୍ଷଲତାର ବଂଶବିସ୍ତାର କରିବା ପାଇଁ ପ୍ରୋତ୍ସାହିତ କରିବ ।

***

# ସହାୟକ ଗ୍ରନ୍ଥସୂଚୀ


୧. *Orissa District Gazetteer* (Mayurbhanj).

୨. *The Wealth of India* (different volumes), Council of Scientific & Industrial Research (CSIR), New Delhi.

୩. *ଚାରା ପ୍ରସ୍ତୁତି ଓ ବୃକ୍ଷରୋପଣ ପ୍ରଣାଳୀ*, ରାଷ୍ଟ୍ରୀୟ ବୃକ୍ଷ ଉତ୍ପାଦକ ସମବାୟ ମହାସଂଘ, ଅନୁଗୋଳ, ପ୍ରକାଶ କାଳ ଅଜ୍ଞାତ ।

୪. *ପ୍ରୀତି ଲାଗି ପରିଚୟ*, ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ, କେଶରପୁର, ୧୯୯୧ ।

୫. ମିଶ୍ର ଘନଶ୍ୟାମ, *ଦ୍ରବ୍ୟଗୁଣ କଳ୍ପତରୁ*, ନ୍ୟାସନାଲ ପ୍ରିଣ୍ଟର୍ସ, କବିସୂର୍ଯ୍ୟନଗର, ୧୯୯୧ ।

୬. ଶତପଥି କବିରାଜ କୃଷ୍ଣବ୍ରହ୍ମା, *ବନୌଷଧି ବିଜ୍ଞାନ* (୨ୟ ଭାଗ), ଧର୍ମଗ୍ରନ୍ଥ ଷ୍ଟୋର, କଟକ, ପ୍ରକାଶକାଳ ଅଜ୍ଞାତ ।

୭. ପଟ୍ଟନାୟକ ଡ. କମଳ କୁମାରୀ ଓ ଭାଲେଣ୍ଟିନା ପ୍ରଜ୍ଞା, *ବୃକ୍ଷଲତାର ଔଷଧିଗୁଣ* (୧ମ ଓ ୨ୟ ଭାଗ), ବିଦ୍ୟାପୁରୀ, କଟକ, ୧୯୯୯ ।

୮. ପଟ୍ଟନାୟକ ଡ. ହରିହର, *ଉଦ୍ଭିଦର ଔଷଧିଗୁଣ* (୧ମ ଓ ୨ୟ ଭାଗ), ବିଦ୍ୟାପୁରୀ, ୧୯୯୯ ।

୯. ଦାଶ ମଧୁସୂଦନ, *ଉଦ୍ଭିଦ ସଂପଦ*, ଭୁବନେଶ୍ୱର, ୨୦୦୧ ।

୧୦. ତ୍ରିପାଠୀ ବ୍ରଜବନ୍ଧୁ, *ଦ୍ରବ୍ୟଗୁଣ କଳ୍ପଦ୍ରୁମ*, ବେଲଗୁଣ୍ଠା, ୧୯୪୩ ।

୧୧. ତ୍ରିପାଠୀ ପଣ୍ଡିତ କୃଷ୍ଣଚନ୍ଦ୍ର, *ସଚିତ୍ର ପାରିବାରିକ ଦ୍ରବ୍ୟଗୁଣ*, ଆସ୍କା, ୧୯୯୫ ।

୧୨. Edwards, Badhwar & Dey, *The Vegetable Tanning Materials of India & Burma*, Govt. of India, Dehradun, 1952.

୧୩. Sengupta M., *Uses of Important Trees & Plants Found in Orissa*, Govt. of Orissa, Cuttack, 1941.

୧୪. *Bauhinia*, National Botanic Gardens, Lucknow, 1958

୧୫. *Devolution of Forest Management : Creating Space for Community Action for Forest Management* (case studies), VASUNDHARA, 2000.

୧୬. Rath B. & Nanda P., *Local Thumb Rules of Herbs Extraction*, VASUNDHARA, Bhubaneswar, 2001

୧୭. Sen Jayita & Prakash Kumar, *Study on the Potential & Maketing of Select Medicinal Plants* (draft report prepared on the basis of organisational training at VASUNDHARA), Xavier Institute of Social Service (Ranchi), 2001.

୧୮. ମିଶ୍ର ନିରଞ୍ଜନ ଓ ମିଶ୍ର ମଳୟ କୁମାର, *ଉଦ୍ଭିଦ ପରିଚୟ*, ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର, ୧୯୮୫।

୧୯. Rath B., *Aspects of Garjat Forestry*, VASUNDHARA, 2000.

୨୦. Times of India, 17.09.2001.

୨୧. ଦୈନିକ ସମ୍ବାଦ, ୪.୯.୨୦୦୧

୨୨. ଦୈନିକ ପ୍ରଜାତନ୍ତ୍ର, ୪.୯.୨୦୦୧

୨୩. Mishra Manas, *Value Addition Potential of Primary Collectors Level for Tamarindus Indica (Tamarind) & Bauhinia Vahlii (Siali) Leaves in the State of Orissa*, IIFM, 1995.

୨୪. ନନ୍ଦ ରାମକୃଷ୍ଣ, *ବିଶ୍ୱ ପରିଚୟ*, କଟକ ପବ୍ଲିସିଂ ହାଉସ୍, କଟକ, ୧୯୯୬।

୨୫. *The Useful Plants of India*, CSIR, New Delhi, 1992.

୨୬. Chaterjee A. & Pakrashi S., *The Treatise on Indian Medicinal plants* (3 volumes), Govt. of India, 1992 & 1994.

୨୭. Saxena & Brahman, *The Flora of Orissa* (4 volumes), Regional Research Laboratory, Bhubaneswar.

୨୮. Badhuar *et al*, *Rauvolfia Serpentina*, Forest Research Institute, Dehradun, 1962.

୨୯. ମାନସିଂହ ମାୟାଧର (ସଂପାଦକ), *ଓଡ଼ିଆ ଜ୍ଞାନକୋଷ*, ପ୍ରଥମ (ନମୁନା) ଖଣ୍ଡ, ନ୍ୟୁ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର୍ସ ଲିଃ; କଟକ, ପ୍ରକାଶ କାଳ ଅଜ୍ଞାତ।

୩୦. *ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ* (୪ ଖଣ୍ଡ), ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୬୩।

୩୧. ଗ୍ଲୋଭର, *ଲାଖ ଚାଷର ନିୟମାବଳୀ*, ଭାରତୀୟ ଲାଖ ଗବେଷଣା ପ୍ରତିଷ୍ଠାନ, ନାମ୍କୁମ୍, ପ୍ରକାଶ କାଳ ଅଜ୍ଞାତ।

୩୨. Glover P.M., *Some Simple Methods of Reducing the Damage Done by Insect Enemies to the Lac Crops*, Indian Lac Research Institute, Namkum, 1939.

୩୩. କାନୁନ୍‌ଗୋ ବିନୋଦ, *ଜ୍ଞାନମଣ୍ଡଳ* (ପ୍ରଥମ ଖଣ୍ଡ), କଟକ, ୧୯୬୮ ।

୩୪. ମହାରଣା ବାଉରିବନ୍ଧୁ, *ଶିଳ୍ପଶାସ୍ତ୍ର*, ଓଡ଼ିଶା ସରକାର, ୧୯୯୫

୩୫. Troup R.S., *The Silviculture of Indian Trees* (3 volumes), Oxford, 1921.

୩୬. Sengupta H.P., *A. Simple Guide to the Cultivation of Lac*, Calcutta, 1937.

୩୭. Glover P.M., *Lac Cultivation in India*, Indian Lac Research Institute, 1937.

୩୮. ଶ୍ରୀମତୀ ସିନି ଇଚାଗୁଟୁ, *ହାଟ-ବଜାର* (ଅକ୍ଟୋବର ୧, ୨୦୦୧), ବସୁନ୍ଧରା, ଭୁବନେଶ୍ୱର ।

୩୯. *ଲାଖ କୀଟ ପାଳନ : କେବେ, କାହିଁକି, କିପରି*; ଭାରତୀୟ ଲାଖ ଗବେଷଣା ପ୍ରତିଷ୍ଠାନ, ନାମ୍‌କୁମ୍, ୨୦୦୧ ।

୪୦. ଶ୍ରୀ ନିଗମାନନ୍ଦ, *ଯୋଗୀଗୁରୁ*, ନୀଳାଚଳ ସାରସ୍ୱତ ସଂଘ, ପୁରୀ, ୧୯୮୭ ।

୪୧. Vimla Devi & Krishna Rao, *Aswagandha*, The Heritage, Feb.-1989.

୪୨. Krishnamurthy, *Sarpagandha*, The Heritage, July - 1989.

୪୩. Kirtikar & Basu, *Indian Medicinal Plants* (Vol.III), Allahabad, 1981 (Revised by Blatter, Caius & Mhaskar)

୪୪. ପ୍ରହରାଜ ଗୋପାଳଚନ୍ଦ୍ର, *ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ (ବିଭିନ୍ନ ଭାଗ)*, କଟକ, ୧୯୩୧-୩୬

୪୫. Mohanty P., *Char Seed Collection & Trade in Orissa*, VASUNDHARA (undated).

# ପରିଶିଷ୍ଟ(୧)

ଔଷଧୀୟ ତଥା ଅନ୍ୟାନ୍ୟ ବୃକ୍ଷଲତାର ମଞ୍ଜି ଓ ଚାରା ତଥା/କିମ୍ବା ଚାଷ ସମ୍ବନ୍ଧୀୟ ପରାମର୍ଶ ଯୋଗାଇ ପାରୁଥିବା କେତେକ ସଂସ୍ଥା, ଅନୁଷ୍ଠାନ ଏବଂ ବ୍ୟକ୍ତିବିଶେଷଙ୍କ ଠିକଣା :

୧. ଶ୍ରୀ ଅରବିନ୍ଦ ମଜୁମଦାର, ପାର୍ବତୀପୁର, ଖୁଣ୍ଟୁଣି ।

୨. Regional Plant Resource Centre, Ekamra Kanan, Bhubaneswar.

୩. Regional Research Laboratory (Department of Medicinal & Aromatic Plants), Bhubaneswar.

୪. Officer-in-Charge, Seed section, Forest Research Institute, DehraDun - 248 001.

୫. ଭେଷଜ ସମିତି, ପଦମ୍‌ପୁର (ବରଗଡ଼) ।

୬. ସବୁଜ ବିପ୍ଳବ, ଆଦର୍ଶପଡ଼ା, ବଲାଙ୍ଗୀର ।

୭. ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ, କେଶରପୁର, ନୟାଗଡ଼ ।

୮. ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

# ପରିଶିଷ୍ଟ(୨)

ଔଷଧୀୟ ବୃକ୍ଷଲତାର ଚାଷକୁ ପ୍ରୋତ୍ସାହିତ କରିବା ଉଦ୍ଦେଶ୍ୟରେ ସେପ୍ଟେମ୍ବର ୨୦୦୧ରେ ଭାରତ ସରକାରଙ୍କ Medicinal Plants Board ତରଫରୁ ନିମ୍ନ ଔଷଧିଗୁଡ଼ିକର କ୍ରେତା ତଥା ବିକ୍ରେତାଙ୍କ ଠାରୁ ଆବେଦନ ପତ୍ର ଆହ୍ୱାନ କରାଯାଇଛି :

୧. ଅଶ୍ୱଗନ୍ଧା (Withania somnifera)
୨. ଅତିବିଷା (Aconitum heterophyllum)
୩. ଭୂଇଁଅଁଳା ବା ବାଡ଼ିଅଁଳା (Phyllanthus fraternus)
୪. ବ୍ରାହ୍ମୀ (Bacopa monieri)
୫. ନେପାଳୀ ଚିରେଇତା (ଭୂଇଁନିମ୍ବ ନୁହେଁ, ଅର୍ଥାତ Swertia chirata)
୬. ଗୁଡ଼ମାରୀ (Gymnema sylvestris)
୭. ଜଟାମାଂସୀ (Nardostachys jatamansi)
୮. କୁଢ଼ (Saussurea lappa)
୯. କଟୁକୀ (Picrorhiza kurroa)
୧୦. ଲୁଣିଲୁଣିଆ (Solanum nigrum)
୧୧. ଶ୍ୱେତ ତାଳମୂଳୀ ବା ସଫେଦ ମୁଷଳୀ (Chlorophytum arundinaceum)
୧୨. ପୁଷ୍କରମୂଳ (Inula racemosa)
୧୩. ପାତାଳଗରୁଡ଼ (R. serpentina)
୧୪. ଶତାବରୀ (Asparagus racemosus)
୧୫. ବାଇବିଡ଼ଙ୍ଗ (Embelia ribes)
୧୬. ବତ୍ସନାଭ (ମହୁରା : Aconitum ferox / A. chasmanthum)

ଉଲ୍ଲେଖଯୋଗ୍ୟ ଯେ ଏଥିରୁ କେତେକ ପ୍ରଜାତି ଓଡ଼ିଶାରେ ପ୍ରାକୃତିକ ରୂପେ ଦେଖାଯାଏନାହିଁ (ଯଥା : ମହୁରା ତଥା ନେପାଳୀ ଚିରେଇତା ଯାହା ହିମାଳୟ ପରିବେଶରେ ହିଁ ଦେଖିବାକୁ ମିଳିଥାଏ)।

*ଅଧିକ ବିବରଣୀ ପାଇଁ ଯୋଗାଯୋଗ କରିବାର ଠିକଣା :*

Chief Executive Officer, Medicinal Plants Board,
Department of Indian Systems of Medicine & Homeopathy,
Indian Red Cross Society Building, Red Cross Road,
New Delhi - 110 001.

# ପରିଶିଷ୍ଟ(୩)

## କେତେକ ଲଘୁ ବନଜାତ ଦ୍ରବ୍ୟର ବଜାର ଦର (ଅକ୍ଟୋବର, ୨୦୦୧)

| ଲଘୁ ବନଜାତ ଦ୍ରବ୍ୟ | ସର୍ବନିମ୍ନ ଦର (ହାଟ) | ସର୍ବାଧିକ ଦର (ହାଟ) |
|---|---|---|
| ଅଁଳା (କ୍ୱିଣ୍ଟାଲ) | ୬୦ ଟଙ୍କା (ମଣଦା) | ୧୨୫ ଟଙ୍କା (ବାଦାମପାହାଡ଼) |
| ଅଶ୍ୱଗନ୍ଧା (କେଜି) | ୧୬୮ ଟଙ୍କା (ମଣଦା) | ୨୫୦ ଟଙ୍କା (ବାଦାମପାହାଡ଼) |
| ବାହାଡ଼ା (କେଜି) | ୬ ଟଙ୍କା (ଜୁନାଗଡ଼) | ୭ ଟଙ୍କା (ଜୁନାଗଡ଼) |
| ଚାରମଞ୍ଜି (କେଜି) | ୧୦ ଟଙ୍କା (ସାତକୋଶିଆ) | ୧୫ ଟଙ୍କା (ସାତକୋଶିଆ) |
| ଚାର ଶସ (କେଜି) | ୧୨୦ ଟଙ୍କା (ସାତକୋଶିଆ) | ୧୩୦ ଟଙ୍କା (ସାତକୋଶିଆ) |
| ଶୁଖିଲା ହରିଡ଼ା (କେଜି) | ୮ ଟଙ୍କା (ଜୁନାଗଡ଼) | ୧୦ ଟଙ୍କା (ବାଦାମପାହାଡ଼) |
| ଶୁଖିଲା ମହୁଲ (କେଜି) | ୩ ଟଙ୍କା (କୁତ୍ରା) | ୧୨ ଟଙ୍କା (ଶରତ) |
| ମସାଣି ଛାଲି (କେଜି) | ୬୦ ଟଙ୍କା (ବାଦାମପାହାଡ଼) | ୬୦ ଟଙ୍କା (ବାଦାମପାହାଡ଼) |
| ନାଗେଶ୍ୱର ଫୁଲ (କେଜି) | ୫୦ ଟଙ୍କା (ବାଦାମପାହାଡ଼) | ୬୮ ଟଙ୍କା (ମଣଦା) |
| ପାତାଳଗରୁଡ଼ (କେଜି) | ୩୦ ଟଙ୍କା (ପେଦାବାଇଲୁ, ଆନ୍ଧ୍ରପ୍ରଦେଶ) | ୩୫ ଟଙ୍କା (ପେଦାବାଇଲୁ, ଆନ୍ଧ୍ରପ୍ରଦେଶ) |
| କୁସୁମୀ ଲାଖ | ୨୦ ଟଙ୍କା (ଶରତ) | ୩୦ ଟଙ୍କା (ଶରତ) |
| ଶିଆଳି ଖଲି (ଚକି*) | ଟ.୪.୫୦ (ଖଜୁରୀପଡ଼ା) | ୧୦ ଟଙ୍କା (ଭୋଳାଗାଡ଼ିଆ) |
| ମଞ୍ଜିଥିବା ତେନ୍ତୁଳି (କେଜି) | ୨ ଟଙ୍କା (ଚିତ୍ରକୋଣ୍ଡା) | ୨୦ ଟଙ୍କା (ଟିପିଲେଇ) |
| ମଞ୍ଜିଛଡ଼ା ତେନ୍ତୁଳି (କେଜି) | ୬ ଟଙ୍କା (ଚିତ୍ରକୋଣ୍ଡା) | ୨୦ ଟଙ୍କା (ରିଆମାଳ) |
| ଟୋଲ (କେଜି) | ଟ.୩.୫୦ (ବାଂଶପାଳ) | ୭ ଟଙ୍କା (କୁତ୍ରା) |

* ସାଧାରଣତଃ ୮୦ଟି ଖଲିପତ୍ରର ବିଡ଼ା।

ତଥ୍ୟ-ସୂତ୍ର 'ହାଟ-ବଜାର', ନଭେମ୍ବର ୧, ୨୦୦୧

*ବି.ଦ୍ର.: ଉପରେ ଦିଆଯାଇଥିବା ତଥ୍ୟମାନ 'ହାଟ ବଜାର'ର ସମ୍ବାଦ-ଦାତା/ଦାତ୍ରୀଙ୍କ ଠାରୁ ମିଳିଥିବା ତଥ୍ୟ ଉପରେ ଆଧାରିତ, ତେଣୁ ଏଗୁଡ଼ିକୁ 'ବସୁନ୍ଧରା'ର ପ୍ରତ୍ୟକ୍ଷ ଅନୁଧ୍ୟାନ ଉପରେ ପର୍ଯ୍ୟବେକ୍ଷିତ ବୋଲି ଭାବିବା ଅନୁଚିତ।*

# ପରିଶିଷ୍ଟ(୪)

## କେନ୍ଦୁ ପତ୍ରର ମାନ-ନିୟନ୍ତ୍ରଣ ସୂତ୍ର

କେନ୍ଦୁ ପତ୍ର ବିଡ଼ି ତିଆରି ପାଇଁ ବ୍ୟବହୃତ ହୁଏ ଏବଂ ହଜାର ହଜାର ଗରିବଙ୍କୁ ରୋଜଗାର ଦେବା ସହିତ ସରକାରଙ୍କୁ ମଧ ପ୍ରଚୁର ରାଜସ୍ୱ ଦେଇଥାଏ । ବଡ଼ କେନ୍ଦୁ ଗଛରୁ ସୁସ୍ୱାଦୁ ଫଳ ମିଳୁଥିଲେ ମଧ ବିଡ଼ି ଉପଯୋଗୀ ଭଲ ପତ୍ର ମୁଖ୍ୟତଃ ଛୋଟ ଗଛ ବା ବୁଦାରୁ ମିଳିଥାଏ ।

ପତ୍ରର ଉତ୍କର୍ଷ ରକ୍ଷା ପାଇଁ  ନିମ୍ନ ବିଧିଗୁଡିକ ଅନୁସରଣ କରାଯାଇପାରେ :

- ମୂଳ-ସଂସ୍କାର ବା ଗୋଛା କଟେଇ ଦ୍ୱାରା ଭଲ ପତ୍ର ମିଳିଥାଏ । ଗୋଛା କଟେଇର ପ୍ରାୟ ୪୫ ଦିନ ପରେ ପତ୍ର ବାହାରିଥାଏ । ତେଣୁ ଫେବୃଆରୀ ମାସରେ କଟେଇ କରାଯିବା ଉଚିତ ବୋଲି ପରାମର୍ଶ ଦିଆଯାଇଛି ।
- କୌଣସି ଅଞ୍ଚଳ ବା ଜଙ୍ଗଲରେ ଗୋଟିଏ ସମୟରେ କଟେଇ କରିପାରିଲେ ପତ୍ର ମଧ ସବୁ ଜାଗାରେ ଗୋଟିଏ ସମୟରେ ହିଁ  ମିଳିବାର ସମ୍ଭାବନା ରହେ ।
- କ୍ରମାଗତ ତିନିବର୍ଷ ଧରି ଗୋଛା କଟେଇ କରାଗଲେ ଅଧିକ ସୁଫଳ ମିଳିଥାଏ ।
- ସମାନ ପରିମାଣର ଦୁଇ ପରସ୍ତ ପତ୍ରକୁ ପରସ୍ପରର ବିପରୀତ ଦିଗରେ (ଉପରତଳ କରି) (ଅର୍ଥାତ୍ ଗୋଟିକର ଡେମ୍ଫ ପାଖରେ ଅନ୍ୟଟିର ଅଗ ରହିଥିବ) ବିଡ଼ା ବନ୍ଧାଯିବା  ଭଲ କାରଣ ବିଡ଼ା ଭିତରର ପତ୍ର ଭଲ ଭାବେ ଶୁଖିବାରେ ଏହା ସାହାଯ୍ୟ କରେ ।
- ବିଡ଼ାକୁ ଖୁବ୍ କଷି କରି ବନ୍ଧାଯିବା ଠିକ୍ ନୁହେଁ । ତା'ଛଡ଼ା, ଯେଉଁଥିରେ ବନ୍ଧାଯିବ, ତା'ଯେପରି ଶୁଖିବା ପରେ ଫାଟି ଅଥବା ଖୋଲି ନଯିବ, ସେଥି ପ୍ରତି ମଧ ଦୃଷ୍ଟି ରଖିବା ଉଚିତ ।
- ପ୍ରତ୍ୟକ୍ଷ ସୂର୍ଯ୍ୟ କିରଣରେ ପ୍ରାୟ ତିନିଦିନ ଶୁଖିବା ପରେ ପତ୍ର ଲାଲ ପଡିଯାଏ । ତା'ପରେ ବିଡ଼ାକୁ ଓଲଟାଇ ଦିଆଯାଏ ଯେପରିକି ଅନ୍ୟ ଭାଗଟି ମଧ ଭଲ ଭାବେ ଶୁଖି ପାରିବ ।
- ଶୁଖିଯାଉଥିବା ପତ୍ରଗୁଡିକୁ ଗଦା କରି ତା' ଉପରେ ପାଣି ଛିଞ୍ଚାଯାଇଥାଏ । ଏଥିପାଇଁ ପ୍ରଥମେ ଛୋଟ ଛୋଟ ପତ୍ରଗଦାମାନ କରି ତା'ଉପରେ ପାଣି ଛିଞ୍ଚିବା ପରେ ସେଗୁଡିକୁ ଏକାଠି କରି ଗୋଟିଏ ବଡ଼ ଗଦାରେ ପରିଣତ କରି ଅଳ୍ପ ପାଣି ଛିଞ୍ଚିବା ପରେ ପାଲ ଦ୍ୱାରା ସମ୍ପୂର୍ଣ୍ଣ ଢାଙ୍କି ଦିଆଯାଏ(ଯେପରିକି ପବନ ନ ବାଜିବ) । ଏହା ଫଳରେ ପତ୍ର ଗଦାରେ ଥିବା ଜଳୀୟ ଅଂଶ  ବାଷ୍ପରେ ପରିଣତ ହୋଇ ପାଲ ତଳେ ଥିବା ପତ୍ରଗୁଡିକୁ ନରମ କରିଦିଏ ଏବ ସେ ପତ୍ରକୁ ହିଁ ବସ୍ତାରେ ଭରିବା ପାଇଁ ସୁବିଧା ହୁଏ । କିନ୍ତୁ ଦେଖିବାକୁ ହେବ ଯେ ଗଦାରେ ଯେପରି ଅଧିକ ପାଣି ପଡ଼ି ନଯାଏ । ସାଧାରଣତଃ

ପତ୍ରଗଦା ତଳେ ଥିବା ଚଟାଣ ଭିଜିବା ପର୍ଯ୍ୟନ୍ତ ଉପରେ ପାଣି ଛିଞ୍ଚା ଯାଇଥାଏ । ପାଗ ଖରାପ ଥିଲେ ହୁଏତ କମ୍ ପାଣି ଦରକାର ହୁଏ କାରଣ ପତ୍ରରେ ଅଧିକ ପାଣି ଲାଗି ରହିଲେ ତାହା କଳା ପଡ଼ିଯିବାର ଆଶଙ୍କା ଥାଏ । ଯଦି ପାଣିର ପରିମାଣ ଅଧିକ ହୋଇଯାଏ, ତା'ହେଲେ ସଙ୍ଗେ ସଙ୍ଗେ ପାଲ ନ ଘୋଡ଼ାଇ ପତ୍ରଗଦାକୁ କିଛି ସମୟ ଖୋଲା ଛାଡ଼ିଦେବା ଭଲ ।

- ବର୍ଷାରେ ଭିଜିଯାଇଥିବା ପତ୍ର ପାଇଁ ହୁଏତ ପାଣି ଛିଞ୍ଚିବା ଦରକାର ନ ହୋଇ ପାରେ । ଅଳ୍ପ ଭିଜି ଥିବା ପତ୍ରକୁ ପାଲ ଦ୍ୱାରା ଘୋଡ଼ାଇ ଦେଲେ ହେବ, କିନ୍ତୁ ଅଧିକ ଭିଜିଥିବା ପତ୍ରକୁ ପ୍ରଥମେ କୌଣସି ଢାଲୁ ଜାଗାରେ ଶୁଖାଇବାକୁ ହେବ ଯେପରିକି ପାଣି ଗଡ଼ି ବାହାରିଯିବ ।
- ଉପର ପତ୍ର ଯଦି ଖରାପ ହୋଇଯାଏ, ତା'ହେଲେ ତା'କୁ କାଢି ଫିଙ୍ଗି ଦେବା ଭଲ ।
- ଯେଉଁଠି ପତ୍ର ଶୁଖାଯିବ ବା ବସ୍ତାରେ ଭର୍ତ୍ତି କରାଯିବ, ସେଠାରେ ଉଇ ନଥିବା ଭଲ ।
- ଚଟାଣ ଯଦି ପକ୍କା (ସିମେଣ୍ଟ) ନ ହୋଇଥାଏ, ତା'ହେଲେ ତଳେ କୁଣ୍ଡା ବିଛାଇ ଦେଲେ ତା'ଉପରେ ପତ୍ରଗୁଡିକୁ ବସ୍ତାରେ ଭରିବା ହୁଏତ ସୁବିଧାଜନକ ହୋଇପାରେ ।

((Rajasthan Forest Produce Collector's and Processor's Groups Support Societyଙ୍କ ଦ୍ୱାରା ପ୍ରକାଶିତ *ମଜଦୁର୍ ସେ ମାଲିକ* ପୁସ୍ତକର ଅନୁସରଣରେ ଲିଖିତ । ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶା ପରିପ୍ରେକ୍ଷୀରେ ଏଇ ସୂତ୍ରଗୁଡ଼ିକ କେତେକ ସ୍ଥଳେ ହୁଏତ ସାମାନ୍ୟ ପରିବର୍ତ୍ତିତ ରୂପ ନେଇପାରେ, ଯଥା : ରଣପୁର ଅଞ୍ଚଳରେ ଗୋଛା କଟେଇର ପ୍ରାୟ ମାସକ ପରେ ହିଁ ପତ୍ର ତୋଳା ଆରମ୍ଭ ହୋଇଥାଏ ଏବଂ ଅନ୍ୟ କେଉଁଠି ଏଥିପାଇଁ ହୁଏତ ଦୁଇମାସ ସମୟ ଲାଗିଥାଏ ।

ଶ୍ରୀ ଗିରି ରାଓ(ବସୁନ୍ଧରା)ଙ୍କ ସୂଚନା ଅନୁଯାୟୀ ମାଟିରୁ ଦୁଇ ଇଞ୍ଚ ଉପରକୁ ହିଁ ବୁଦାଗୁଡିକୁ ହାଣିବା ଉଚିତ, ତା' ମଧ ତେର୍ଚ୍ଛାରେ ଏବଂ ଗୋଟିଏ ଚୋଟରେ (ପ୍ରତିଟି କାଣ୍ଡ ପାଇଁ) । ତା'ଛଡା, ସୂର୍ଯ୍ୟଙ୍କ କିରଣ ପ୍ରଖର ହେବା ପୂର୍ବରୁ କଟେଇ କାମ ଶେଷ ହେଲେ ଭଲ ।))

***

ଗୋଲ ମରିଚ ଭଳି ଅନ୍ୟ ଉପାଦାନ ସହିତ ମିଶିବା ପରେ ଏହାର ବିଷନାଶକ ଶକ୍ତି ବଢି ଯାଉଥାଇପାରେ ବା ଶରୀର ଉପରେ ତା'ର ପ୍ରଭାବ ଅଧିକ ଶକ୍ତିଶାଳୀ ଅଥବା ନିଖୁଣ ହେଉଥାଇପାରେ । R. tetraphyla କୁ ନେଇ ମୟମାନେ ସେଇଭଳି ଏକ **ଔଷଧ** ତିଆରି କରୁଥିଲେ ।

● ଅଶ୍ୱଗନ୍ଧା ଚାଷ ପାଇଁ ଜଳ ସେଚନର ବ୍ୟବସ୍ଥା କରାଯାଇପାରିଲେ ଅଧିକ ସଫଳତା ମିଳେ । ଅଶ୍ୱଗନ୍ଧା ଚେର ଅମଳ ହେବା ପରେ ସେଥିରୁ ମୋଟା/ପତଳା, ଛୋଟ/ ବଡ- ଏଭଳି ଖଣ୍ଡମାନ ନ ବାଛି ଯଦି ଏକାଠି ବିକ୍ରି କରି ଦିଆଯାଏ, ତା'ହେଲେ ଦର କେଜି ପ୍ରତି ୩୦/୪୦ ଟଙ୍କା ବା କମ୍ ହୋଇପାରେ କାରଣ ବଛା ଯାଇଥିବା ଭଲ ଖଣ୍ଡ ପାଇଁ ହିଁ ଅଧିକ ଦର ମିଳିଥାଏ ।

● Persea macarantha (ପୃ. ୪୬) ଲେଧା ମେଦା ପରିବାରର ହିଁ ଗୋଟିଏ ଗଛ, ତେବେ ଏହାର ଫଳ(ଗାଢ ନୀଳ ବା କଳା)ରେ ଧଳା ଟୋପାମାନ ଦେଖାଯାଇପାରେ । ଫୁଲ ହେବା ପାଇଁ ସ୍ୱତନ୍ତ୍ର ଡାଳ ବାହାରିଥାଏ ଏବଂ ସେ ଡାଳରେ ପତ୍ର ହୁଏ ନାହିଁ ।

● ପୃ. ୪୮ର ପଞ୍ଚମ ଅନୁଚ୍ଛେଦରେ ବିଭିନ୍ନ ଛାଲି ଉପରେ ଥିବା ନିଷେଧାଦେଶ ସଂପର୍କରେ ଯାହା କୁହାଯାଇଛି, ତା'ର ସଠିକ ତଥ୍ୟ ହେଉଛି, ସରକାର ଏଗୁଡିକର ଲିଜ୍ ପ୍ରଦାନ ଉପରେ ହିଁ ନିଷେଧାଦେଶ ଜାରି କରିଛନ୍ତି । ତେବେ ସରକାରୀ ସଂସ୍ଥାକୁ ଏହାର ସଂଗ୍ରହ ପାଇଁ ଅନୁମତି ଦିଆଯାଇପାରେ ।

● ପରିଶିଷ୍ଟ- ୩ ରେ ଦିଆଯାଇଥିବା ଅଶ୍ୱଗନ୍ଧା ଓ ମସାଣି ଛାଲିର ଦର ପୁଟୁଳି ବଣିଆ (ଚେରମୂଳିର ସ୍ଥାନୀୟ ବେପାରୀ ) ମାନଙ୍କ ଠାର ସଂଗୃହୀତ ହୋଇଛି ବୋଲି ସୂଚନା ମିଳିଛି ।

# 'ବସୁନ୍ଧରା' ସଂପର୍କରେ...

ଜଙ୍ଗଲ ସୁରକ୍ଷାରେ ଲୋକ ପ୍ରଚେଷ୍ଟାକୁ ପ୍ରୋତ୍ସାହିତ ତଥା ସୁଦୃଢ଼ କରିବା ଏବଂ ଜଙ୍ଗଲ-ନିର୍ଭର ଗରିବମାନଙ୍କର ସମସ୍ୟାକୁ ସରକାରଙ୍କ ଦୃଷ୍ଟିକୁ ଆଣି ତା'ର ପ୍ରତିକାର ବ୍ୟବସ୍ଥା କରିବାର ଲକ୍ଷ୍ୟ ନେଇ ୧୯୯୨ ମସିହାରେ ଏକ ସ୍ୱେଚ୍ଛାସେବୀ ସଂଗଠନ ରୂପରେ 'ବସୁନ୍ଧରା'ର ଆତ୍ମପ୍ରକାଶ ଘଟେ । ଦୀର୍ଘ ବର୍ଷର ଆନ୍ତରିକ ତଥା ନିରବଚ୍ଛିନ୍ନ ପ୍ରୟାସ ଏହି କ୍ଷୁଦ୍ର ସଂଗଠନଟିକୁ ଆଜି କେବଳ ରାଜ୍ୟ ବା ଜାତୀୟ ସ୍ତରରେ ନୁହେଁ, ଆନ୍ତର୍ଜାତିକ ସ୍ତରରେ ମଧ୍ୟ ଶ୍ରଦ୍ଧା ଓ ସମ୍ମାନ ଅଧିକାରୀ କରିଛି ଏବଂ ଜଙ୍ଗଲ ବ୍ୟତୀତ ଅନ୍ୟାନ୍ୟ ପ୍ରାକୃତିକ ସଂପଦର ସଂରକ୍ଷଣ ଓ ସୁପରିଚାଳନା ତଥା ସାମାଜିକ ଏବଂ ଆର୍ଥିକ ନ୍ୟାୟର ସୁପ୍ରତିଷ୍ଠା ଭଳି କ୍ଷେତ୍ରଗୁଡ଼ିକରେ ମଧ୍ୟ ଯଥାସମ୍ଭବ ଯୋଗଦାନ କରିବା ଲାଗି ପ୍ରେରଣା ଯୋଗାଇଛି ।

ବନଜାତ ଦ୍ରବ୍ୟଗୁଡ଼ିକର ଉତ୍ପାଦନ ତଥା ଉପଯୋଗ ପ୍ରସଙ୍ଗରେ ଥିବା ଅନେକ ପ୍ରକାର ସମସ୍ୟା ବା ଜଟିଳତା 'ବସୁନ୍ଧରା'ର ବିଭିନ୍ନ ଅନୁସନ୍ଧାନ ବା ଅନୁଧ୍ୟାନ ସମୟରେ ଜଣାପଡ଼ିଥିଲା । ଏତଦ୍‌ବ୍ୟତୀତ, ଲୋକଙ୍କର ଜୀବନ ଓ ଜୀବିକା ତଥା ପରିବେଶ ଭଳି ଅନ୍ୟାନ୍ୟ ପ୍ରସଙ୍ଗରେ ମଧ୍ୟ 'ବସୁନ୍ଧରା' ଅନେକ କିଛି ଲକ୍ଷ୍ୟ/ଆବିଷ୍କାର କରିଛି । ଏହି ତଥ୍ୟଗୁଡ଼ିକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ଉଦ୍ଦେଶ୍ୟରେ ଯେଉଁ ପଦକ୍ଷେପମାନ ଗ୍ରହଣ କରାଯାଇଛି, ତ୍ରୈମାସିକ ପତ୍ରିକା 'ବନବାରତା' ଏବଂ ପାକ୍ଷିକ ସମ୍ବାଦପତ୍ର 'ହାଟବଜାର' ତା'ର ପ୍ରତିଫଳନ । ପ୍ରସ୍ତୁତ ପୁସ୍ତକଟି ସେହି ପଦକ୍ଷେପର ଅନ୍ୟତମ ଦୃଷ୍ଟାନ୍ତ ମାତ୍ର ।

## ବିଷୟବସ୍ତୁ

ଏଥିରେ ସ୍ଥାନ ପାଇଛି :

ବନୌଷଧି, ଚାର, ତେନ୍ତୁଳି, ସବାଇ ଘାସ, ମହୁଲ, ଶିଆଳି ଲତା, ମସାଣି ଛାଲି ଏବଂ ଲାଖ ଇତ୍ୟାଦିର ସଠିକ ସଂଗ୍ରହ, ଉପଯୋଗ ତଥା ବଂଶବିସ୍ତାର ସୂତ୍ର

ଏବଂ

ଅନ୍ୟ କେତେକ ଉପଯୋଗୀ ପ୍ରସଙ୍ଗ ।


**ବସୁନ୍ଧରା**

ଇ/୧୪, ଗଜପତି ନଗର, ସୈନିକ ସ୍କୁଲ,
ଭୁବନେଶ୍ୱର-୭୫୧୦୦୫

ସହଯୋଗ ରାଶି : ଟ. ୨୫/-

ମୁଦ୍ରଣ : ଜୟ ଭାରତ ୟୁନିଟ, ଭୁବନେଶ୍ୱର